ସର୍ବଜନସମାଦୃତ, ଓଡ଼ିଶା ଥିଏଟର୍ସ ଦ୍ୱାରା

ବହୁବାର ପ୍ରଶଂସାର ସହିତ ଅଭିନୀତ

ଓଡ଼ିଆର ଜାତୀୟ-ସଂପଦ

# ଜୟଦେବ ନାଟକ



ଅଭିନବ ସଂସ୍କରଣ

୧୯୬୩

କବିଚନ୍ଦ୍ର କାଳୀଚରଣ ପଟ୍ଟନାୟକ

ପ୍ରକାଶକ :—

ଧର୍ମଗ୍ରନ୍ଥ ଷ୍ଟୋର

କଟକ-୨

ମୂଲ୍ୟ ଟ ୨/ ଦୁଇଟଙ୍କା

ପ୍ରଥମ ସଂସ୍କରଣର—

# ନିବେଦନ

ଜଳବାୟୁ ଦୋଷରୁ ହେଉ ବା ଅନ୍ୟ କୌଣସି କାରଣରୁ ହେଉ ଆରବରେ ରହିଯିବା ଆମ ଜାତିର ଗୋଟାଏ ଅଭ୍ୟାସ ହୋଇପଡ଼ିଛି; ତେଣୁ ଅନେକ କ୍ଷେତ୍ରରେ ଆମେ ନାନା ପ୍ରକାର ଅପ୍ରିୟ, ଅସ୍ୱାସ୍ଥ୍ୟକର, ଅପ୍ରୟୋଜନୀୟ, ଅପଥ୍ୟ ଅକଥା ଗୁଡ଼ାଏ ଅକ୍ଳେଶରେ ଗ୍ରହଣ କରି ବସୁଛୁଁ । ଆମ ଆଖି ଆଗରେ ଆମର ଧନ ପର ଲୁଟି ନେଉଛି, ଆଉ ଆମେ ଚୃହିଁ ଜଳକା । ସାମାନ୍ୟ ନାଟ୍ୟଶିଳ୍ପୀ ମୁଁ—ସେତୁବନ୍ଧର ଗୁଣ୍ଡୁଚିମୂଷା । ସୁଯୋଗ ସୁବିଧା ନାହିଁ ଯେ ଆଜ ଆମ ଘରର ଜୟଦେବଙ୍କୁ ସବାକ୍ ଚିତ୍ର ଜରିଆରେ ସବୁଠି ଚହଲାଇ ପାରିବ । ମୁଁ ଯେତିକ ପାରିଲି ଭାଇଭଉଣୀଙ୍କ ହାତରେ ଦେଲି—ଏଥିଁ ଅଧିକ କରିବା କଥା ଅଛି କି ନାହିଁ ଏଣିକି ସେ ବଡ଼ଗୁରର ଦାୟିତ୍ୱ ମୋ ଦେଶର—ମୋ ଜାତିର, ମୋ ଭଳି ନଗଣ୍ୟର ନୁହେଁ ।

ଓଡ଼ିଆର ସମ୍ପଦ ଭକ୍ତକବି ଜୟଦେବଙ୍କ ଜୀବନୀ ସମ୍ବନ୍ଧେ ମୁଁ ସାଧ୍ୟମତ ଆଲୋଚନା କରିଛି, ତଥ୍ୟ ସଂଗ୍ରହଣ କରିଛି ଓ ଦୃଢ଼ ପ୍ରମାଣ ଦେଇ ଜାତୀୟଗୌରବକୁ ଆଜ ରଙ୍ଗମଞ୍ଚରେ ଉପସ୍ଥାପିତ କରୁଛି । ପ୍ରତ୍ୟକ୍ଷରେ,ପରୋକ୍ଷରେ ଓ ମୋର ବହୁ ବନ୍ଧୁ ମୋତେ ସାହାଯ୍ୟ କରିଛନ୍ତି, ସେମାନଙ୍କ ସ୍ନେହ, ଶ୍ରଦ୍ଧା ଓ ଦୟା ପ୍ରଦର୍ଶନ କରି । ଟେକ୍‌କାଲିର ରାଜା ବାହାଦୁର ତଥ୍ୟ ସଂଗ୍ରହରେ

ସହାୟକ ହୋଇ ମୋର ଧନ୍ୟବାଦାର୍ହ । ସୁରଙ୍ଗୀର ସଙ୍ଗୀତ-ସାହିତ୍ୟ-ପ୍ରାଣ ରାଜା ସାହେବ ମୋତେ ଏ ଲେଖାର ପ୍ରାରମ୍ଭରୁ ବହୁ ମତେ ସମୁତ୍ସାହିତ କରିଛନ୍ତି — ମୁଁ ତାଙ୍କର ସ୍ନେହାନୁଗ୍ରହର ଋଣୀ ।

ପରିଶେଷରେ ନାଟକ-ପ୍ରଦର୍ଶନ-ମୁଗ୍ଧ ଓଡ଼ିଶାର ପ୍ରତ୍ୟେକ ଭାଇଭଉଣୀଙ୍କୁ ମୁଁ ଅନ୍ତରର କୃତଜ୍ଞତା ଜ୍ଞାପନ କରୁଅଛି ।

କବି ଜୟଦେବଙ୍କ ଜୀବନୀ ସମ୍ବନ୍ଧରେ ଗୋଟିଏ ଦୀର୍ଘ ପ୍ରବନ୍ଧ ଏ ପୁସ୍ତକରେ ସନ୍ନିବେଶିତ ହେବାକୁ ମୋର ବନ୍ଧୁମାନଙ୍କର ନିର୍ଦ୍ଦେଶ ଥିଲା ଓ ମୁଁ ମଧ୍ୟ ପ୍ରସ୍ତୁତ ଥିଲି; କିନ୍ତୁ କାଗଜ-ଦୁର୍ଭିକ୍ଷ ତା'ର ଅନ୍ତରାୟ ହେଲା । ସୁଯୋଗ ଅପେକ୍ଷାରେ ମନକଥା ମନେ ମନେ ମରୁ । ଉପାୟ କଅଣ ?

କଟକ
୧୯୬୩

ବିନୀତ
**କାଳୀଚରଣ**





ଗଜପତି ମହାରାଜା ଶ୍ରୀ ଶ୍ରୀ. ଶ୍ରୀ ରାମଚନ୍ଦ୍ର ଦେବ, ପୁରୀ

# 'JAYADEV' AT ORISSA THEATRES

"Jayadev" at the Orissa Theatres of Kavichandra Kalicharan Patnaik is attracting large crowds every night revealing once again that beneath the thin veneer to materialism which we have acquired, our faith in things spiritual is as strong as ever.

Breathes there an Oriya who has not heard of Jayadev and his immortal 'Gita Govind' which is being sung daily before Lord Jagannath at Puri ?

The play which narrates the story of Jayadev, his marriage with Padmavati, the composition of Gita Govind, his visit to Puri. his devotion to the Lord, his miraculous cure of the blind and his public acceptance at the Temple of the Lord as Orissa's holy saint and poet is bound to charm the ear and Please the eye and Kali Babu's rendering of the story in dramatic form does both.

It is invidious to make distinctions among the actors and actresses when all had acquitted themselves creditably as if born to their respective parts. But special mention must be made of Jayadev who distinguished himself in his part.

The scenicand lighting effects were excellent. The worship at the Puri temple was realistic.

We congratulate Kali Babu for producing another popular and successful play.

*New Orissa*
Date, 1-5-43



# ଅଭିମତ

# ଓଡ଼ିଶା ଥିଏଟର୍ସଙ୍କ

## "ଜୟଦେବ"

କଟକ, ତା ୨୫।୫।୪୩—ଓଡ଼ିଶା ଥିଏଟର୍ସ ଗଲା କେତେଦିନ ହେଲା ତାଙ୍କ ସ୍ଥାୟୀ ରଙ୍ଗମଞ୍ଚରେ "ଜୟଦେବ" ନାଟକଟି ଅଭିନୟ କରୁଛନ୍ତି। କାଳୀବାବୁଙ୍କ ଅନ୍ୟାନ୍ୟ ନାଟକମାନଙ୍କ ଭିତରେ ଏ ନାଟକଟି ସର୍ବୋତ୍କୃଷ୍ଟ ପରି ମନେହୁଏ। ଅଭିନେତା ଓ ଅଭିନେତ୍ରୀ ପ୍ରତ୍ୟେକେ ଏଥିରେ ସଫଳତାର ସହିତ ନିଜର ଅଭିନୟ ଦେଖାଇ ନାଟକଟିକୁ ଯେପରି ସରସ ଓ ସର୍ବାଙ୍ଗ ସୁନ୍ଦର କରିଛନ୍ତି, ଲେଖକ ତାଙ୍କ ସରଳ ଲେଖନୀ ଓ ସୁମଧୁର ସଙ୍ଗୀତ ସଂଯୋଗରେ 'ଓଡ଼ିଆପୁଅ ଜୟଦେବ'ଙ୍କ ଜୀବନୀର ସ୍ପଷ୍ଟରୂପ ସେହିପରି ଆଙ୍କି ପାରିଛନ୍ତି। ଓଡ଼ିଆ ଥିଏଟର୍ସ ତାଙ୍କର ଏ ଆଦର୍ଶ ଅଭିନୟ କଳାପ୍ରଦର୍ଶନରେ ଉତ୍କଳର ନାଟ୍ୟମଞ୍ଚରେ ନିଜର ବାହାଦୁରୀ ଦେଖାଇବା ସଙ୍ଗେ ସଙ୍ଗେ ଉତ୍କଳର ଗୌରବ ବଡ଼ଦେଉଳ ଓ ବଡ଼ଠାକୁରଙ୍କର ମହାତ୍ମ୍ୟ ଓ ପ୍ରତିଷ୍ଠାର ଟେକ ରଖି ପାରିଛନ୍ତି। ଓଡ଼ିଶାର ଗୌରବ ନିଶାଣ "ଜୟଦେବ"ଙ୍କୁ ପ୍ରତ୍ୟେକ ଓଡ଼ିଆ ପୁଅ ସାଦର ସମ୍ବର୍ଦ୍ଧନା କରିବେ ବୋଲି ଆଶା କରାଯାଏ।

ସମାଜ

ତା ୧୬ । ୫ । ୪୩

## "ଜୟଦେବ"

କାଳୀବାବୁଙ୍କର "ଓଡ଼ିଆ ପୁଅ ଜୟଦେବ" ଆଜକୁ ମିଶାଇ ୩୩ ରାତି ଖୁବ୍ ଜନଗହଳି ଭିତରେ ଅଭିନୀତ ହୋଇଅଛି। ଓଡ଼ିଆର ଜାତିପ୍ରୀତି ତଥା କାଳୀବାବୁଙ୍କ ଲେଖାର କୃତିତ୍ୱର ଏହା

ଉତ୍କୃଷ୍ଟ ନିଦର୍ଶନ । ଓଡ଼ିଶାରେ ଏ ଭଳି ଜାତୀୟତା ସମ୍ପଦରେ ଗୌରବାନ୍ୱିତ ନାଟକର ବହୁଳ ପ୍ରଚଳନ ପ୍ରତ୍ୟେକ ଓଡ଼ିଆ ଆଶା କରିବା ସ୍ୱାଭାବିକ ।

ସମାଜ

ଜୁନ୍ ତା ୧୭ । ୧୯୪୩

— — —

# ଓଡ଼ିଶା ଥିଏଟର୍ସର

## ଜୟଦେବ

ଓଡ଼ିଶା ଥିଏଟର୍ସ ଓଡ଼ିଶା ନାଟ୍ୟକଳା ବିକାଶରେ ଯେ ଏକାବେଳକେ ନୂଆ ଆଭିମୁଖ୍ୟ ଖୋଲିଛନ୍ତି, ସେ କଥା ଆମେ ଆଗରୁ କହିଥିଲୁ ; କିନ୍ତୁ ଏବେ ତାଙ୍କର 'ଜୟଦେବ' ନାଟକଟି ଦେଖିବା ପରେ ଓଡ଼ିଆ ଯେ ନିଜର ନାଟ୍ୟକଳା ବିକାଶ କରିବା ପାଇଁ ସମର୍ଥ, ଏ କଥା ଆମର ମନେହୁଏ । ଓଡ଼ିଶାର ବହୁ ସମ୍ପଦ ବିଦେଶୀ କୌଶଳୀମାନେ ନିଜର କରିନେବାପାଇଁ ଉଦ୍ୟମ କରିଚନ୍ତି । 'ଜୟଦେବ' ସେ ଚକ୍ରାନ୍ତରୁ ବାଦ ଯାଇ ନାହାନ୍ତି । ଓଡ଼ିଶା ଥିଏଟର୍ସଙ୍କର ଜୟଦେବ ନାଟକଟି ଦେଖିଲେ ମନେହୁଏ ଯେ ଓଡ଼ିଶାର କଳା ଯେପରି ଭାବରେ ଚୋରି କରି ଯାଉଥିଲା, ତାର ତୀବ୍ର ପ୍ରତିବାଦ କରିବା ପାଇଁ ଓଡ଼ିଆମାନେ ସକ୍ଷମ । ଜୟଦେବ ନାଟକରେ ଖାଲି ଯେ ଜୟଦେବଙ୍କୁ ଓଡ଼ିଆ ବୋଲି ପରିଚିତ କରି ଯାଇଚି ତା ନୁହେଁ, ନାଟକର ଭାଷା, ଭାବ ଭଙ୍ଗି ସମସ୍ତ ଏକାବେଳକେ ଓଡ଼ିଆର କଳାରେ ପରିପୂର୍ଣ୍ଣ । ଏ ନାଟକଟି ପ୍ରତ୍ୟେକ ଓଡ଼ିଆର ଗର୍ବ ବିଷୟ ହୋଇ ରହିବ ।

ନବଭାରତ

ତା ୮ । ୫ । ୪୩ ରିଖ

— — —

# ଅଭିମତ

# ଓଡ଼ିଶା ଥିଏଟର୍ସଙ୍କ

## "ଜୟଦେବ"

କଟକ, ତା ୨୫।୫।୪୩—ଓଡ଼ିଶା ଥିଏଟର୍ସ ଗଲ କେତେଦିନ ହେଲା ତାଙ୍କ ସ୍ଥାନୀୟ ରଙ୍ଗମଞ୍ଚରେ "ଜୟଦେବ" ନାଟକଟି ଅଭିନୟ କରୁଛନ୍ତି। କାଳୀବାବୁଙ୍କ ଅନ୍ୟାନ୍ୟ ନାଟକମାନଙ୍କ ଭିତରେ ଏ ନାଟକଟି ସର୍ବୋତ୍କୃଷ୍ଟ ପରି ମନେହୁଏ। ଅଭିନେତା ଓ ଅଭିନେତ୍ରୀ ପ୍ରତ୍ୟେକେ ଏଥିରେ ସଫଳତାର ସହିତ ନିଜର ଅଭିନୟ ଦେଖାଇ ନାଟକଟିକୁ ଯେପରି ସରସ ଓ ସର୍ବାଙ୍ଗ ସୁନ୍ଦର କରିଛନ୍ତି, ଲେଖକ ତାଙ୍କ ସରଳ ଲେଖନୀ ଓ ସୁମଧୁର ସଙ୍ଗୀତ ସଂଯୋଗରେ 'ଓଡ଼ିଆପୁଅ ଜୟଦେବ'ଙ୍କ ଜୀବନୀର ସ୍ପଷ୍ଟରୂପ ସେହିପରି ଆଙ୍କି ପାରିଛନ୍ତି। ଓଡ଼ିଆ ଥିଏଟର୍ସ ତାଙ୍କର ଏ ଆଦର୍ଶ ଅଭିନୟ କଳାପ୍ରଦର୍ଶନରେ ଉତ୍କଳର ନାଟ୍ୟମଞ୍ଚରେ ନିଜର ବାହାଦୁରୀ ଦେଖାଇବା ସଙ୍ଗେ ସଙ୍ଗେ ଉତ୍କଳର ଗୌରବ ବଡ଼ଦେଉଳ ଓ ବଡ଼ଠାକୁରଙ୍କର ମହାତ୍ମ୍ୟ ଓ ପ୍ରତିଷ୍ଠାର ଟେକ ରଖି ପାରିଛନ୍ତି। ଓଡ଼ିଶାର ଗୌରବ ନିଶାଣ "ଜୟଦେବ"ଙ୍କୁ ପ୍ରତ୍ୟେକ ଓଡ଼ିଆ ପୁଅ ସାଦର ସମ୍ବର୍ଦ୍ଧନା କରିବେ ବୋଲି ଆଶା କରାଯାଏ।

ସମାଜ

ତା ୨୬ । ୫ । ୪୩

## "ଜୟଦେବ"

କାଳୀବାବୁଙ୍କର "ଓଡ଼ିଆ ପୁଅ ଜୟଦେବ" ଆଜକୁ ମିଶାଇ ୩୩ ରାତି ଖୁବ୍ ଜନଗହଳ ଭିତରେ ଅଭିନୀତ ହେଉଅଛି। ଓଡ଼ିଆର ଜାତିପ୍ରୀତି ତଥା କାଳୀବାବୁଙ୍କ ଲେଖାର କୃତିତ୍ୱର ଏହା

ଉତ୍କୃଷ୍ଟ ନିଦର୍ଶନ । ଓଡ଼ିଶାରେ ଏ ଭଳି ଜାତୀୟତା ସମ୍ପଦରେ ଗୌରବାନ୍ୱିତ ନାଟକର ବହୁଳ ପ୍ରଚଳନ ପ୍ରତ୍ୟେକ ଓଡ଼ିଆ ଆଶା କରିବା ସ୍ୱାଭାବିକ ।

ସମାଜ

ଜୁନ୍ ତା ୧୭ । ୧୯୫୩

---

# ଓଡ଼ିଶା ଥିଏଟର୍ସ'ର

## ଜୟଦେବ

ଓଡ଼ିଶା ଥିଏଟର୍ସ ଓଡ଼ିଶା ନାଟ୍ୟକଳା ବିକାଶରେ ଯେ ଏକାବେଳକେ ନୂଆ ଅଭିମୁଖ୍ୟ ଖୋଲିଛନ୍ତି, ସେ କଥା ଆମେ ଆଗରୁ କହିଥିଲୁ ; କିନ୍ତୁ ଏବେ ତାଙ୍କର 'ଜୟଦେବ' ନାଟକଟି ଦେଖିବା ପରେ ଓଡ଼ିଆ ଯେ ନିଜର ନାଟ୍ୟକଳା ବିକାଶ କରିବା ପାଇଁ ସମର୍ଥ, ଏ କଥା ଆମର ମନେହୁଏ । ଓଡ଼ିଶାର ବହୁ ସମ୍ପଦ ବିଦେଶୀ କୌଶଳୀମାନେ ନିଜର କରିନେବାପାଇଁ ଉଦ୍ୟମ କରିଚନ୍ତି । 'ଜୟଦେବ' ସେ ଚକ୍ରାନ୍ତରୁ ବାଦ ଯାଇ ନାହାନ୍ତି । ଓଡ଼ିଶା ଥିଏଟର୍ସଙ୍କର ଜୟଦେବ ନାଟକଟି ଦେଖିଲେ ମନେହୁଏ ଯେ ଓଡ଼ିଶାର କଳା ଯେପରି ଭାବରେ ଚୋରି କରି ଯାଉଥିଲା, ତାର ତୀବ୍ର ପ୍ରତିବାଦ କରିବା ପାଇଁ ଓଡ଼ିଆମାନେ ସକ୍ଷମ । ଜୟଦେବ ନାଟକରେ ଖାଲି ଯେ ଜୟଦେବଙ୍କୁ ଓଡ଼ିଆ ବୋଲି ପରିଚିତ କରି ଯାଇଚି ତା ନୁହେଁ, ନାଟକର ଭାଷା, ଭାବ ଭଙ୍ଗି ସମସ୍ତ ଏକାବେଳକେ ଓଡ଼ିଆର କଳାରେ ପରିପୂର୍ଣ୍ଣ । ଏ ନାଟକଟି ପ୍ରତ୍ୟେକ ଓଡ଼ିଆର ଗର୍ବ ବିଷୟ ହୋଇ ରହିବ ।

ନବଭାରତ

ତା ୮ । ୫ । ୫୩ ରିଖ

---

## —ନୂତନ ସଂସ୍କରଣର ଅଗ୍ରଲେଖା—

### ଟିକିଏ ଶୁଣିବେ—

—୧୯୪୮ରୁ ୫୩, ୫୩ରୁ ୭୩—ଏଥିଭିତରେ ଢ଼'ଦଶନ୍ଧି ବିତିଗଲାଣି ।

ଆଜି ଏ ନାଟକର ଜନ୍ମଦିନ କଥା ମନେପଡ଼ୁଛି । ତେଣୁ କେତେ ସଂସ୍କରଣ ପରେ ଢ଼'ଧାଡ଼ି ଲେଖିବସିଲି । କେହି ଆଜି ସ୍ଥାକୁ ପଢ଼ନ୍ତୁ – ନ ପଢ଼ନ୍ତୁ, କେବେ ହେଲେ ଢିନେ କାହା ଆଖିରେ ପଡ଼ିବ ତ – ଏଇ ଟିକିକ ଭରସା ।

ଜୟଦେବ ନାଟକ ଲେଖିବା ଆଗରୁ ମୋର ଗ୍ରସଦଳ ଦ୍ୱାରା ଗୀତଗୋବିନ୍ଦକୁ ନାଟ୍ୟରୂପ ଦେଇ ଶହ ଶହ ଗ୍ରତି ଅଭିନୀତ କରାଇଥିଲି । ସେତେବେଳେ 'ଉତ୍କଳ ସାହିତ୍ୟ ସମାଜ' ଗୀତଗୋବିନ୍ଦକୁ ଶ୍ରେଷ୍ଠ ନାଟକ ବିବେଚନାରେ ଶହେଟଙ୍କା ପୁରସ୍କାର ଦେଇଥିଲେ । ଏ ପ୍ରାୟ ୧୯୩୬ ସାଲ କଥା ।

ଗୀତଗୋବିନ୍ଦ ନାଟକର ସଫଳତା ଜୟଦେବ ନାଟକ ଲେଖାଇବାର ପ୍ରେରଣା ଦେଲା ।

ଥୋକେ କହନ୍ତି – ଏବେ ବି କହୁଛନ୍ତି – ଜୟଦେବ ଓଡ଼ିଆ ନୁହନ୍ତି । ମୁଁ କିନ୍ତୁ ଏକଥା ମୋଟେ ବିଶ୍ୱାସ କରୁନାହିଁ । ତାହାର କାରଣ ଏଠି ଠିକେଠିକେ ଲେଖୁଛି:—

### —ରଚନା—

କେବଳ ଅନୁସ୍ୱାର ବିସର୍ଗ ବା ସ୍ଥଳବିଶେଷରେ କିଛି କିଛି ବିଭକ୍ତି ପ୍ରସଙ୍ଗ ବାଦ୍‌ଦେଲେ, ରଚନା ଓଡ଼ିଆ ମଥାର । ଆମ

ପୁରୁଣା କବିମାନଙ୍କ ଗ୍ରନ୍ଥ, ଚୌପଦୀ ପଢ଼ିଲେ ଏକଥା ବାରିହୋଇ ପଡ଼ିବ । ଯତି, ଯମକ, ଅନୁପ୍ରାସ ସବୁଠାରେ ଏକା ବାଗ । ଓଡ଼ିଆ-ଭାଷା ଯେ ସଂସ୍କୃତର ନିକଟତମ ପ୍ରକାଶ ଏ ତ ଅତି ସତ କଥା ।

— ସଙ୍ଗୀତ —

ଓଡ଼ିଆ ସଙ୍ଗୀତ ପଣ୍ଡିତେ :— ଗୀତପ୍ରକାଶ, ମନୋରଥ, ସରଣୀ, ନାଟ୍ୟପୂଣ, କଳ୍ପଲତା ଇତ୍ୟାଦି ଇତ୍ୟାଦି ଯେତେ ଯେତେ ସଙ୍ଗୀତ ଗ୍ରନ୍ଥ ଲେଖିଛନ୍ତି, ସବୁଥିରେ, କ୍ଷୁଦ୍ର ଗୀତ ଅଧ୍ୟାୟରେ ଚଉପଦୀ ଶ୍ରେଣୀସ୍ଥ ଗୀତର ଉଦାହରଣ ସ୍ଥଳରେ ଗୀତଗୋବିନ୍ଦର ପଦମାନ ଦାଖଲ ରୂପେ ଥୋଇଛନ୍ତି ।

ଗୀତମଧ୍ୟ ଗୀତଗୋବିନ୍ଦର ଗୀତମାନଙ୍କର ଯେଉଁ ରାଗ, ତାଳ ନିର୍ଦ୍ଦେଶିତ ହୋଇଛି, ତାହା ପ୍ରୋକ୍ତ ସଙ୍ଗୀତ ଗ୍ରନ୍ଥମାନଙ୍କରେ ଦେଖିବାକୁ ମିଳେ ।

ଯତି ତାଳର ବର୍ଣ୍ଣନା ଓ ଉଦାହରଣ ସ୍ଥଳରେ ଗୀତଗୋବିନ୍ଦର ଗୀତ ବ୍ୟବହାର କରାଯାଇ ଅଛି । ଏହା ଭାରତୀୟ ଅନ୍ୟ ସଙ୍ଗୀତ ପଦ୍ଧତିରେ ଦୃଷ୍ଟ ହୁଏ ନାହିଁ ।

ନିଃସାରୁ ବା ନିଃସାର ତାଳର ଗୀତ ଅନ୍ୟତ୍ର ଦୁର୍ଲ୍ଲଭ । ଏହି ତାଳରେ କେତେ ଓଡ଼ିଶୀ ଗୀତ ରଚିତ ହୋଇଛି ଅନେକ । କଟକ ପ୍ରିଣ୍ଟି କୋମ୍ପାନୀଙ୍କ ଦ୍ଵାରା ପ୍ରକାଶିତ ସ୍ଵର୍ଗୀୟ ଦାମୋଦର ପଟ୍ଟନାୟକଙ୍କ ଦ୍ଵାରା ସଂଗୃହୀତ ସଙ୍ଗୀତ-ସାଗର ୫ମଖଣ୍ଡର ପୃ ୩୨।୩୩ରେ ଥିବା ଗୋଟିଏ ଗୀତ ( ରାଗ କେଦାରଗୌଡ଼ା—ତାଳ ନିଃସାର ) ଏହାର ଉଦାହରଣ ପାଇଁ ଦେଖିବାକୁ କହୁଛି ।

ଗୀତର ମୂଳଅଂଶ:—

ସଖୀ ଆରେ, ଆସିବେ ବୋଲି କାନ୍ତ ।
ଭଣିତା ପଦର ଅଂଶ —
ହରିଚନ୍ଦନ ଭଣି, ଏସନ ବ୍ରଜମଣି —
ରମଣୀ-ଶିରୋମଣି, ମନରେ ଗୁଣି ଗୁଣି
ମଦନ ବାଧା ହେଲା ସଖି ଗୋ···ଇତ୍ୟାଦି ।

ଏହାଛଡ଼ା ନିଃସାର ତାଳର ଅନ୍ୟାନ୍ୟ କେତେ ଗୀତ ମଧ୍ୟ ଆମ ପୁରୁଣା ଗାୟକମାନେ ଗାଇବାର ମୁଁ ଓ ମୋ ବୟସର ଲୋକେ ଶୁଣିଛନ୍ତି ।

ଆଜ ଗୋଟିଏ ତାଳ କଥା କହୁଛି :—'ଆଠତାଳୀ' ତାଳ ଓଡ଼ିଶୀ ସଙ୍ଗୀତର ବିଶେଷତ୍ୱ । ଅନ୍ୟ କେଉଁଠି ଏ ତାଳର ଚଳଣି ନାହିଁ । ମାତ୍ରା ସମାନ ମିଶିଲେ ମଧ୍ୟ ତାଳର ଗୁରୁ ବା ଝୁଙ୍କ ସମାନ ନୁହେଁ । ଏଇ ତାଳର ଗୀତ କେବଳ ଗୀତଗୋବିନ୍ଦରେ ମିଳେ ।

ଗୀତଗୋବିନ୍ଦର ୨ଯ଼ ଗୀତ :—

ଗୁର୍ଜରୀ ରାଗେଣ—ନିଃସାର ତାଳେନ ଚ ଗୀୟତେ
ଗୀତଗୋବିନ୍ଦର ଗୀତ — ୧୦ମ
ଦେଶ ବରାଡ଼ୀ ରାଗେଣ—ଅଷ୍ଟତାଳେନ ଚ ଗୀୟତେ

ଏଇ ଗୀତଟି ଅତି ପରିଚିତ ଗୀତ—ଯଥା :—
"ବଦସି ଯଦି କିଞ୍ଚିଦପି······
× × × ×
ଦେହି ପଦପଲ୍ଲବ ମୁଦାରଂ ।"

ଏଗୀତଟି ଶ୍ରୀମନ୍ଦିରରେ ଲକ୍ଷ୍ମୀଙ୍କ କବାଟଫେଡ଼ା ବେଳେ ଏବେ ମଧ୍ୟ ମାହାରୀଙ୍କ କଣ୍ଠରୁ ଆଠତାଳୀ ତାଳରେ ଗାଇବାର ଯେ କେହି ଶୁଣି ପାରିବେ ।

ଗୀତଗୋବିନ୍ଦ ଗାଇବା ଢଙ୍ଗ ଗ୍ରନ୍ଥନିର୍ଦ୍ଦେଶିତ ରାଗ ତାଳରେ ଆଜି ମଧ୍ୟ, ମଧ୍ୟବର୍ତ୍ତୀ କାଳର—ଯାବତ୍ ଝଡ଼ଝଞ୍ଜା ପରେ ଓଡ଼ିଆଙ୍କ କଣ୍ଠରୁ ଶୁଣାଯାଏ । ବଙ୍ଗଳା, ମଣିପୁର ପ୍ରଭୃତିରେ ଗୀତଗୋବିନ୍ଦକୁ କୀର୍ତ୍ତନ ଧାରାରେ ଗାଇବାର ଶୁଣାଯାଏ । ଏଇଟା କେମିତି ସମ୍ଭବ ହେବ—ମୁଁ ବୁଝିପାରୁ ନାହିଁ । କାରଣ ଗୀତଗୋବିନ୍ଦ ଦ୍ୱାଦଶ ଶତାବ୍ଦୀର ରଚନା – ଶ୍ରୀଚୈତନ୍ୟ ଷୋଡ଼ଶ ଶତାବ୍ଦୀରେ କୀର୍ତ୍ତନର ପ୍ରଚଳନ କରିଥିଲେ । ତେବେ, ଗୀତଗୋବିନ୍ଦର ଗୀତଗୁଡ଼ିକ ଉପରେ ରାଗ-ତାଳ ନିର୍ଦ୍ଦେଶ ଥାଉ ଥାଉ—ତାହା କୀର୍ତ୍ତନ ଢଙ୍ଗରେ ଗୀତ ହେବାଟା ଗାୟନର ଶୁଦ୍ଧ ରୀତି ହୋଇଛି ?

ମୁଁ ଖଣ୍ଡିଏ ଛପା ଗୀତଗୋବିନ୍ଦ କଥା କହୁନାହିଁ—ହିନ୍ଦି, ବଙ୍ଗଳା ଏବଂ ଓଡ଼ିଆଲିପିରେ ଛପା - ୧୦।୨୦ଖଣ୍ଡ ଗୀତଗୋବିନ୍ଦ ମିଳାଇ ଦେଖିଛି— ସମସ୍ତେ ସମାନ ରାଗ-ତାଳର ନାଆଁ ଦେଇଛନ୍ତି । ତେଣୁ ଛପା – ହିମ୍ଳବ ବା ଛପା ଭ୍ରମ ହେବାର ଆଶଙ୍କା କରିବା ଅବା କପରି ?

ଏକଥାକୁ ଛାଡ଼ିଦେଲେ ଜୟଦେବ ନିତ ଗଙ୍ଗାସ୍ନାନ କରୁଥିବାର କଥା ଅଛି । ବଙ୍ଗଳାରେ, ବଡ଼ ମୁହଁରେ କହୁଥିବା ଜୟଦେବଙ୍କ ନିବାସ ବୀରଭୂମି କେନ୍ଦୁବିଲ୍ୱ ବା କେନ୍ଦୁଲି ଗ୍ରାମଠାରୁ ଗଙ୍ଗା ୪୦ ମାଇଲ ଦୂର । ତେବେ, ଜୟଦେବ କଣ ଉଡ଼ି ଯାଉଥିଲେ ନିତ ଗାଧୋଇବାକୁ ?

ଗୁଡ଼ାଏ ଲେଖି, ଲେଖା ବଢ଼ାଇବା ସମୀଚୀନ ମଣୁନାହିଁ । ଏସମ୍ବନ୍ଧରେ ଏଇ ବହିର ୧ମ ଅଙ୍କ ଭୂମିକାରୁ ଦୃଶ୍ୟ ଥରେ ପଢ଼ିବାକୁ

ଓ ସ୍ୱର୍ଗୀୟ ଜଗବନ୍ଧୁ ସିଂହଙ୍କର "ପ୍ରାଚୀନ ଉତ୍କଳ"ର ପୃ୪୬ଷ୍ଠା ଠାରୁ ପୃ୫୮ଷ୍ଠା ପର୍ଯ୍ୟନ୍ତ ପାଠ ଲାଗି ସହୃଦୟ ପାଠକଙ୍କୁ ବିନୀତ ଅନୁରୋଧ ।

ତାଳପତ୍ର ପୋଥି ଓ ଲେଖନ ପ୍ରଥା ଓଡ଼ିଶାର ସ୍ୱତନ୍ତ୍ରତା ।

ଜୟଦେବଙ୍କ ଜନ୍ମସ୍ଥାନ ଇତ୍ୟାଦି ସମ୍ପର୍କରେ ବହୁ ଅକାଟ୍ୟ ଯୁକ୍ତି, ପ୍ରମାଣ ଥିବା ସତ୍ତ୍ୱେ, ଆମ ଜାତିର ନିଷ୍କ୍ରିୟତା, ନୀରବତା ଓ ସହନଶୀଳତାର ସୁଯୋଗ ନେବାକୁ ପଡ଼ୋଶୀଏ ଚୂକେ ପଛାଇ ନାହାନ୍ତି ।

ଜୟଦେବ ନାଟକ ଏଭଳି କେତେକ ପ୍ରମାଣ ଦେଇ ପରିବେଶିତ ହେବାବେଳେ ବହୁ ଅପ୍ରୀତିକର ପରିସ୍ଥିତିର ମୁଁ ସମ୍ମୁଖୀନ ହୋଇଛି । ଦୁର୍ଭାଗ୍ୟ ବଶତଃ, ଏପରିକ ବାଙ୍କାବଜାରରେ ମୋର ଓଡ଼ିଶା ଥିଏଟର୍ସ ପେଣ୍ଡାଲରେ ଜୟଦେବ ନାଟକ ଅଭିନୀତ ହେଉଥିବା ବେଳେ, ନିକଟବର୍ତ୍ତୀ ଘରେ ପ୍ରତ୍ୟହ ଜୋରସୋର୍‌ରେ ଖୋଳକରତାଳ ବାଜି ଦର୍ଶକଙ୍କର ଶୁଣିବାରେ ବ୍ୟାଘାତ ଜନ୍ମାଉଥିଲା । କୌଶଳ ଆଚରଣ ଦ୍ୱାରା ପରେ ଏ ଦୁଷ୍କର୍ମ ଧୀରେ ଧୀରେ ବନ୍ଦ ହୋଇଗଲା । ସବୁକଥା ଲେଖିବା ଏସ୍ଥଳରେ ସମ୍ଭବ ନୁହେଁ । ମୋର "କୁମ୍ଭାରଚକ" ବା "ଓଡ଼ିଶା ରଙ୍ଗମଞ୍ଚର ଇତିହାସ"ରେ କିଛି କିଛି ଜଣାଇବାର ବାସନା ରହିଲା । ଏ କଥା ଏତିକରେ ଥାଉ ।

କେତେ ପ୍ରମାଣ, କେତେ କଥା ତ ଅଛି, ଲେଖା ବଢ଼ିଯିବ ବୋଲି ଡରୁଛି । କ୍ଷମାଦେବେ—

—କାଳୀଚରଣ—

୩୦ । ୧୨ । ୧୯୬୩

## —ସୂଚନା—

## ଗୋଲୋକ

( ନାରାୟଣ ଓ ଲକ୍ଷ୍ମୀ ଦୋଳରେ ଆସୀନ, ପରିଚାରକଗଣ ଦୋଳ ଝୁଲାଉ-ଥିବାବେଳେ ବହିର୍ଦ୍ୱାରରେ ନାରଦ ଗାଉଥିଲେ । )

—ଗୀତ—

ଜୟତୁ··· ଜୟତୁ··· ଜୟତୁ··· ଜୟତୁ
(ନମୋ ନାରାୟଣ ଜଗଜୀବନ ଜୟତୁ···
ଜୟତୁ···ଜୟତୁ)

ସୁନ୍ଦର ହେ-ମନମୋହନ ମୋହନ ! ଶ୍ୟାମକାନ୍ତ କମ କାମ ସୁଶୋଭନ
ନବଘନ-କାନ୍ତ, ଯୋଗୀଜନ ଶାନ୍ତ, ନବୀନ ନୀରଦ ନନ୍ଦିତ
ବର ଅପଘନ । ଜୟତୁ

ନାରାୟଣ—ପ୍ରିୟେ !
ଦେବର୍ଷି ନାରଦ—

ଲକ୍ଷ୍ମୀ—ଚତୁରିକା !
ପ୍ରଭୁଙ୍କ ଆଦେଶ—(ଠାରି ଦେଲେ)

ଚତୁରିକା—(ଦ୍ୱାରକୁ ଯାଇ)
ସ୍ୱାଗତ ହେ ମୁନିବର ! ( ଘେନି ଆସିଲେ )

ନାରଦ—ନମୋ ନମୋ ଦେବ ନାରାୟଣ !

ନାରାୟଣ—ଦେବର୍ଷେ ! କୁଶଳ ତ ? (ଆସନ ନିର୍ଦ୍ଦେଶ)

ନାରଦ—ନର୍ତ୍ତଉର ଉତ୍ତରଳ ଧାର ସବ

ଶିରେ ଯାର-ଅବିରଳ ଝରେ—
ତବ ଆଶୀର୍ବାଦ ଜଳ,
ଅଣିବ କ ତାର ?
ନାରାୟଣ !
ଆସିଥିଲି ଦାସ—ଭ୍ରମି ତ୍ରିଭୁବନ
ନିବେଦିବି ପ୍ରଭୁପାଦେ ମର୍ତ୍ତ୍ୟର କାହାଣୀ ।

**ନାରାୟଣ** — ତୃପ୍ତହେଲି ହେ ନାରଦ !
କହ, କି ବାରତା ?

**ନାରଦ** — ହେ ଶ୍ରୀପତି !
କି ନଜାଣ ଦେବ !
କଳିଯୁଗେ, ମର୍ତ୍ତ୍ୟଧାମେ—
ପବିତ୍ର ଉତ୍କଳ ଖଣ୍ଡେ;
ଥାଉ ଆନ କଥା—
ଯହିଁ ସ୍ୱୟଂ ହେ ଶ୍ରୀଧର !
ଆପଣେ ବିହର
ନୀଳାଚଳ ଶ୍ରୀପୁରୁଷୋତ୍ତମେ—
କି ବର୍ଣ୍ଣିବି ସେ ଦେଶ ମହିମା !
ଦକ୍ଷିଣ-ପଶ୍ଚିମେ ତା'ର
କୁଶଭଦ୍ରା ପ୍ରାଚୀନଦୀ ମଧ୍ୟେ
ଦେବଅଂଶେ ଜାତ ଜୟଦେବ,
କେନ୍ଦୁଲି ଶାସନେ ।
ଶ୍ରୀ ଗୀତଗୋବିନ୍ଦ ରୂପେ
ଯା କଣ୍ଠୁ ସ୍ଫୁରିବ ହରି-ରସ ।
ଭକ୍ତବର

ସନ୍ନ୍ୟାସ ଆଚରି, ଯାପେ ଦିନ ।
କିନ୍ତୁ, ଶକ୍ତିର ମିଳନ ବିନା
ଅନୁମାନେ ମୁହିଁ
ଅସମ୍ପୂର୍ଣ୍ଣ ହେବ ରସଗୀତି ।
ତେଣୁ ହେ ଗୋବିନ୍ଦ !
ନିବେଦନ ପଦକଞ୍ଜେ—
ଉପାୟ ବିଧାନ ।

ନାରାୟଣ—ସତ୍ୟ, ହେ ଦେବର୍ଷେ !
ଜୟଦେବ ପଣ୍ଡିତ ପ୍ରବର,
ମାତ୍ର, କାନ୍ତ ମଧୁ ଶକ୍ତି ବିନା
ଅପୂର୍ଣ୍ଣ ରହିବ ଭାବଧାରା ।
କିନ୍ତୁ—(ଭାବନାରେ ଲକ୍ଷ୍ମୀଙ୍କ ଆଡ଼କୁ ଚାହିଁଲେ)

ଲକ୍ଷ୍ମୀ—ତେଜ ମନୁ ଭାବନା ଗୋବିନ୍ଦ !
ଇଚ୍ଛା ଯେତେ ତବ,
କି ଅଦେୟ ଅଛି ମୋର ?
ଦେଲି ଶକ୍ତି -
କର ନିୟୋଜିତ ତବ କର୍ମେ ।
ନିତ୍ୟବଲ୍ଲଭ -ରାମା
ପଦ୍ମଗନ୍ଧା, ପଦ୍ମାବତୀ ନାମେ
ଜନମିବ ମର୍ତ୍ତ୍ୟେ କନ୍ୟାରତ୍ନ ।
ଇଚ୍ଛା ତବ ହେଉ ହେ ସଫଳ ।

ନାରଦ—ଅଶେଷ କରୁଣାମୟୀ
ଶକ୍ତି ସ୍ୱରୂପିଣୀ,
ବନ୍ଦେ ମା ଗୋ ! ଚରଣ କମଳେ । (ପ୍ରଣାମ)

---

# —ପରିଚୟ—

## ପ୍ରଥମ ଦୃଶ୍ୟ

(ପଦ୍ମାବତୀଙ୍କ ଗୃହର ତୁଳସୀ ବଗିଚା । ଅନତିଦୂରରେ ଶୁଭୁଥିଲା ବଂଶୀ,—ବଡ଼ ମଧୁର ସେ ସ୍ୱର । ବାଳିକା ପଦ୍ମା ଦୌଡ଼ି ଦୌଡ଼ି ଅଣ୍ଟିରେ ଧରି ଥିବା ଗୁଡ଼ିଏ ଫୁଲକୁ ଗୁନ୍ଥି ଗୁନ୍ଥି ଆସୁଛନ୍ତି । ଖୁବ୍ ଜୋରରେ ଦୌଡ଼ି ଆସିବାରୁ ତାଙ୍କର ଗୁରୁ ନିଶ୍ୱାସର ଶବ୍ଦ ବାରିହୋଇ ପଡ଼ୁଥିଲା । ବଡ଼ ଉତ୍କଣ୍ଠିତା ହୋଇ ଡାକିଲେ—)

ପଦ୍ମା—ଦେବ, ଦେବ, ଦେବ ! (ଡାକ ଶୁଣି ବଂଶୀ ବନ୍ଦ ହେଲା । ଇଆ ଇଆ ଡାକିଲେ ବହୁତ ବାର—ଉତ୍ତର ନାହିଁ, ଫୁଲଗୁଡ଼ିକ ଗୁନ୍ଥି ବସିଲେ—ଖୁବ୍ ଚରି ଚରି ହୋଇ, ପୁଣି ବଂଶୀ ଶୁଭିଲା, ଅଧୀର ହୋଇ ସେଆଡ଼କୁ ଟିକିଏ ଯାଇଁ ଡାକିଲେ) ଦେବ ! ଦେବ ! (ବଂଶୀ ଅନ୍ୟ ଦିଗରେ ଶୁଭିଲା; କିନ୍ତୁ ଉତ୍ତର ନାହିଁ, ପୁଣି ଡାକିଲେ । ଏପରି ଛଅ ବାର ଏମିତି ଡାକ ଡାକ ବିରକ୍ତ ହୋଇ କହିଲେ) ଆରେ ! ଦେବ ! (ଉତ୍ତର ମିଳିଲା ନାହିଁ, ନିତାନ୍ତ ବ୍ୟସ୍ତ ହୋଇ ଅଭିମାନରେ କହିଲେ ) ହଉ, ନ ଶୁଣ, ଦେଖିବା ଭଲା, ଆଜି ଯେବେ କେବେ ଡାକୁଛି ! (ଫୁଲ ଗୁନ୍ଥାରେ ଯେମିତି ମନ ଭରି ଲାଗିଗଲା, ବଂଶୀ ମଧ୍ୟ ବନ୍ଦ ହୋଇଗଲା—ଗାଇଲେ ଗୁଣୁ ଗୁଣୁ କରି ପଦେ ଗୀତ, ସଙ୍ଗେ ସଙ୍ଗେ ସେହି ସ୍ୱରରେ ବଂଶୀ ବାଜିଲା ଅଦୂରେ, ସେହିଆଡ଼କୁ ଚାହିଁ ପଦ୍ମା ଗାଉଥିଲେ, ହଠାତ୍ ଗୀତ ବନ୍ଦ କରି ଦେଲେ, ବଂଶୀ ମଧ୍ୟ ନୀରବ, ପୁଣି ଡାକିଲେ ) ଦେବ ! ( ଜିଭ କାମୁଡ଼ି ପକାଇ କହିଲେ—) ନାଃ, ମୁଁ ଆଉ ଗାଇବି ନାହିଁ । ( ଗୁନ୍ଥିଲେ ହାର ) ।

ଦେବଦାସ—( ବଂଶୀ ବନ୍ଦକରି, ପଛରୁ ଆସି, ଚୁପ୍‌ଚୁପ୍ ପଦ୍ମା ନ ଜାଣିଲା ପରି ଠିଆ ହୋଇ, ହଠାତ୍ ପଦ୍ମା ହାତରୁ ହାରଟି ନେଇଗଲେ ) ।

ପଦ୍ମା—( ଚମକି, ଅଭିମାନରେ କାନ୍ଦ ପକାଇବା ପରି ) ଆରେ, ନାଁ—(ଦେବଦାସର ହାତ ଧରି ନେଲେ ) ମୋ ହାର ।

ଦେବ—ନଦେବି !

ପଦ୍ମା ଆରେ, ମୁଁ ତାକୁ ମୋ ଦିଅଁଙ୍କ ପାଇଁ ଗୁନ୍ଥିଛି ।

ଦେବ—( ହାରଟି ବେକରେ ପିନ୍ଧି ) ହେଇ, ମୁଁ ମାଗି ବସି ଦେଲିଣି ପିନ୍ଧି ପକାଇ—ଆଉ ତୋ ଦିଅଁ କେମିତି ପିନ୍ଧିବେ ?

ପଦ୍ମା—ନ ପିନ୍ଧିବେଲ ନାଇଁ ଯା, ମୋ ହାର ଦିଅ, ମୁଁ ତମକୁ ଦେବି ନାଇଁ ।

ଦେବ—କାହିଁକି ଦବୁ ନାହିଁ ?

ପଦ୍ମା—କାହିଁକି ଦେବି ? ମୁଁ ଡାକିଲାବେଳକୁ—

ଦେବ—(ହସି) ଓ, ତୁ ରାଗିଚୁ ମୋ ଉପରେ ?

ପଦ୍ମା—ନାଁ, ମୋ ହାର ଦିଅ ।

ଦେବ—ଆଚ୍ଛା, ଏଥର ଯଦି ବରାବର ତୁ ଡାକିଲେ ଶୁଣେ ? ତେବେ—

ପଦ୍ମା—ନାଁ ।

ଦେବ ତେବେ ବି ନାଁ—( ଦରହସି ) ।

ପଦ୍ମା—ମିଛୁଆ—!

ଦେବ ନାଁ, ଏଥର ବରାବର ଶୁଣିବି ।

ପଦ୍ମା—ନାଇଁ ତ, ମୋ ହାର ଦିଅ ।

ଦେବ—କହିଲି ତ, ମୁଁ ଶୁଣିବି ! ସୁନ୍ଦର ହେଇଚ ହାରଟି—ଭାରି ଲୋଭ ହଉଚି ମୋର ।

ପଦ୍ମା—( ଅଭିମାନରେ ) ହୁଁ, ଆଜ ମୁଁ ଡାକିଲା ବେଳକୁ ? ଏପାଖ ସେପାଖ ଲୁଚି ଲୁଚି ବଂଶୀ ବଜାଇବ, ଶୁଣିବ ନାହିଁ ! ନାଁ, ମୁଁ ମୋ ହାର ତମକୁ ଦେବି ନାହିଁ, ଦିଅ ।

ଦେବ—ଆଚ୍ଛା, ମୁଁ ବଜଉଚି ତେବେ, ଏଇ ତୋ ହାର, ନେ ।

ପଦ୍ମା—( ହାର ନେଇ ବୁଲିପଡ଼ିଲେ ଓ ଅଞ୍ଚିରୁ ଗୋଟିଏ ସୁନ୍ଦର ଗୋଲପ ଆଣି ହାର ମଝିରେ ଦେଇ ହାର ଶେଷ କରି ବସିଲେ ) ।

ଦେବ—ଆରେ ବାଃ ! ଏଡ଼େ ସୁନ୍ଦର ଗୋଲାପଟି କୋଉଠି ରଖିଥିଲୁ ମ ! ଏଇଟିକୁ ତ ହାର ଭିତରେ ଗୁନ୍ଥି ନ ଥିଲୁ ? ବାଃ, ଏଥରକ ହାରଟି ସତେ ଆହୁରି ସୁନ୍ଦର ଦିଶିଲା ।

ପଦ୍ମା—( ନୀରବ ) ।

ଦେବ—କଥା କହିବୁ ନାହିଁ, ନା ? ମୁଁ ତେବେ ଯାଉଚି, ମୋର କାମ ଅଛି, ଥା ।

ପଦ୍ମା—ମିଛୁଆ, ସବୁଦିନ ଖାଲି ମତେ ଠକିବ ? ହୁଁଃ, ସତେ ଯିମିତି କେତେ କାମ ଅଛି ! ଗୁଡ଼ ଘର ପିମ୍ପୁଡ଼ି ଖାଇ ଯାଉଚି, ଯେ଼ ଗଲେ ଜଗିବେ ପରା !

ଦେବ—ପଚାରିଲେ କଥା କହିବୁ ନାହିଁ, ହାରଟି ନେଇ ପିନ୍ଧିଥିଲି ଯେ ଛଡ଼େଇ ନେଲୁ—

ପଦ୍ମା—ନେଲି ତ ନେଲି, ବେଶ୍ କଲି ।

ଦେବ—ମୁଁ ସେମିତି ଗଲି ତ ଗଲି, ବେଶ୍ କଲି ( ପାହୁଣ୍ଡେ ପିଠି ଫେରାଇ ଯାଇ ) ।

ପଦ୍ମା—( ଅଭିମାନରେ ) ହଁ ( ଗୁହାଁଲେ ଗତ ପଥକୁ ) ।

ଦେବ—( ଫେରି ଗୁହାଁ ) ହଁ, କଅଣ ?

ପଦ୍ମା—ମୁଁ ଡାକିଲାବେଳେ ?

ଦେବ—କହିଲ ତ ଏଥର ବସବର ଶୁଣିବ ।
ପଦ୍ମା—(ପୂର୍ବପରି ) ହୁଁ ।
ଦେବ—ବେଶ୍, ତେବେ ଏଥର ହାତଟି ଦେ [ ପାଖକୁ ଆସି ହାତ
　　ବଢ଼ାଇ ]
ପଦ୍ମ—ନାଁ—।
ଦେବ—ତେବେ ମୁଁ ଯାଉଚ ।
ପଦ୍ମା—[ ନୀରବ ] ।
ଦେବ—ବାଃ, ହାତଟି ଦେ, ନା-ନାହିଁ ମୋ: ବଅଁଙ୍କର—ମୁଁ ଯାଉଚ
　　ନା—ଚୁପ୍ ।
ପଦ୍ମା—ଥରେ ବଂଶୀ ବଜାଅ ।
ଦେବ—ତୁ ତେବେ ଗାଆ—
ପଦ—[ ଦର ହସି ଗାଇଲେ ] ।

ନାଚ—ନାଚ

ନାଚ ନନ୍ଦକିଶୋର କହ୍ନାଇଁ,
ଥରେ କୁଞ୍ଜରେ ବଂଶୀ ବଜାଇ । ୦ ।
　　ମନ୍ଦ ସମୀରେ ସୁଗନ୍ଧ ଲୁଚୁଇ
　　ନୀଳ ଯମୁନା ନଚୁଇ ନଚୁଇ,
　　　ରାଧା ରାଧା ଗାଇ ଗାଇ । ୧ ।

( ଦେବଦାସ ବଂଶୀବଜାଇଲେ ପଦ୍ମାବତୀର ଡାହାଣ କରକୁ ଲାଗି ଠିଆହୋଇ । ମଝିରେ ପଦ୍ମାବତୀଙ୍କ ଅଜଣାରେ ଗୀତ ବନ୍ଦ ହୋଇଗଲା, ବଂଶୀ ବାଜୁଥାଏ, ପଦ୍ମା ଦେବଦାସଙ୍କ ଗଳାରେ ହାରଟି ପିନ୍ଧାଇ ଦେଲେ ) ।

ଦେବ—[ ବଂଶୀ ବନ୍ଦ କରି ] ଆରେ ! ହାରଟି ମୋ ଗଳାରେ ତୁ
　　ନିଜେ ପିନ୍ଧାଇ ଦେଲୁ ଯେ !

ପଦ୍ମା — ବେଶ୍ କଲ୍, ମୋ ମନ, ମୋ ଖୁସି ।
ଦେବ—ତେବେ ତୋ ଢଙ୍ଗ—
ପଦ୍ମା — ତୁମେ ଏଣିକି, ମୁଁ ଡାକଲେ –
ଦେବ — ବରାବର ଶୁଣିବ ।
ପଦ୍ମା — ମୋର ଯେତେବେଳେ ମନ—
ଦେବ — ସେତେବେଳେ ।
ପଦ୍ମା—ଆଚ୍ଛା ଦେଖିବା !

(ନେପଥ୍ୟରୁ ଶୁଭିଲା—ପଦ୍ମା ! )

ଦେବ—ତେବେ ମୁଁ ଯାଉଚି ଆଜି, ( ଉଠି ଚାଲିଲେ ) ପୁଣି କାଲି ଆସିବି ।
ପଦ୍ମା—( କେତେକ ପାହୁଣ୍ଡ ଯିବା ପରେ ) ଦେବଦାସ !
ଦେବ—( ସେଇଠୁ ଫେରି ) ଦେବଦାସୀ !
ପଦ୍ମା—[ହସି, ଛଳ କୋପ ସହ] ଆରେ ! ମୁଁ କଣ ଦେବଦାସୀ ?

ନେପଥ୍ୟରୁ ଶୁଭିଲା—ପଦ୍ମା ! [ ଦୁହେଁ ଦୁଇ ଦିଗକୁ ଚାଲିଗଲେ ]

---

## "ଦୈବବାଣୀ"

[ପଦ୍ମାର ପିତା ଓ ମାତା ଶୋଇଥିଲେ—ପଦ୍ମାର ଜନନୀ ସ୍ୱପ୍ନରେ ଡାକୁଛନ୍ତି ଚମକିଲା ପରି—]

ପଦ୍ମା ବୋଉ—ପଦ୍ମା ! ପଦ୍ମା !
ପଦ୍ମା ପିତା — (ଉଠି) ପଦ୍ମାବୋଉ ! ପଦ୍ମା ଶୋଇଚି ପରା ! କଅଣ ? କାହିଁକି ଡାକୁଚ ?
ପ: ବୋ—[ନିଦରୁ ଉଠି] ହଁ ? ପଦ୍ମା ଶୋଇଚି, ନା ? ଓଃ !
ପ: ପିତା— କଅଣ ! କାହିଁକି ଏମିତି ବ୍ୟସ୍ତ ହେଉଚ ? କଅଣ ହେଲା ?

ପ: ବୋ—ଓଃ, ପଦ୍ମା ଘରେ ଶୋଇଛି ତେବେ, ନାଁ ?

ପ: ପିତା　ଦ୍ୱାରଠାରୁ ଆଜି କୁଆଡ଼େ ଯାଆନ୍ତା ସେ ?

ପ: ବୋ—ନାଃ, ସେ ଶୋଇଛି, ଶୋଉ । ମୁଁ ଗୋଟେ କଅଣ ସ୍ୱପ୍ନ ଦେଖିଲି ଯେ, ପଦ୍ମା ମୋର ଦେବଦାସୀ ହୋଇଛି ।

ପ: ପିତା—ତା'ପରେ (ଗମ୍ଭୀର ଭାବେ)

ପ: ବୋ—ପଦ୍ମା ବଡ଼ଦେଉଳରେ ଦେବଦାସୀ ହୋଇ ଜଗନ୍ନାଥଙ୍କୁ ଫୁଲମାଳ ପିନ୍ଧେଇ ଦଉଛି ।

ପ: ପିତା—ତା'ପରେ –

ପ: ବୋ – ନଦଠା ଗୃହିଁକର ଭାଙ୍ଗି ଗଲା ।

ପ: ପିତା – ତା'ପରେ ? –

ପ: ବୋ—ଓହୋ ! ଭଦ୍ର ମୁଣ୍ଡ ମୋର ଝାଇଁ ମାରି ଯାଉଛି !

ପ: ପିତା—ହଁ, ତା'ପରେ—

ପ: ବୋ – ତା'ପରେ ନଦଠା ଭାଙ୍ଗି ଗଲା ।

ପ: ପିତା – ତା'ପରେ ? –

ପ: ବୋ – ଆଜି ତା'ପରେ କଅଣ ? ଦେଖିଲି ତ ଗୋଟେ ଏମିତି ଖରାପ ସ୍ୱପ୍ନଟେ, ପଦ୍ମା ମୋର ଦେବଦାସୀ ।

ପ: ପିତା—ତା'ପରେ-

ପ: ବୋ—ତୁମେ ବି ତ କଅଣ ଭାବଭି, ଭାବର, ଲଗେଇଛ, ତୁମେ ବି କଅଣ କିଛି ଦେଖିଲ ନାଁ, କଅଣ ? ବାପ୍ପାଙ୍କ ପରି ଭାବର, ଭାବର ଲଗେଇଛ ଯେ !

ପ: ପିତା—ନାଁ, ମୁଁ ଦେଖିନାହିଁ, ଶୁଣିଛି, ବହୁବର ଶୁଣୁଛି ।

ପ: ବୋ—,କଅଣ ?

ପ: ପିତା—ସେଇ—ଅନେକ ଦିନର କଥା—ପଦ୍ମାର ଜନ୍ମ ନାହିଁ । ବଡ଼ଦେଉଳରେ, ରତ୍ନ ସିଂହାସନ ତଳେ ମୋର ସତ୍ୟ, କନ୍ୟା ହେଲେ—ସେ ହେବ ଦେବଦାସୀ ।

ପ: ବୋ —ନାଁ, ନାଁ, ପଦ୍ମା ମୋର ଦେବଦାସୀ ହବ ନାହିଁ । ମୁଁ କରେଇ ଦେବି ନାହିଁ । ( ଉଠି ) ନାଁ—ଏଗୁଡ଼ା ଖାଲି ଦେବତାଙ୍କ ମାୟା—ଦେବକୂଟ । ପଦ୍ମା ! ପଦ୍ମା !

( ଦଉଡ଼ି ଗୁଲିଗଲେ )

ପଦ୍ମା ପିତା – ( ବାଧା ଦେବାକୁ ପଛେ ପଛେ ଯାଇ) ନାଁ, ନାଁ, ପଦ୍ମା ବୋଉ ! ଡାକନାହିଁ ତାକୁ ଡାକନାହିଁ, ପଦ୍ମା ଦେବତାର ଆଶୀର୍ବାଦ, ପଦ୍ମା ଦେବଦାସୀ । ନାଁ, ନାଁ, ଡାକନାହିଁ ତାକୁ, ଶୋଉ ସେ, ଶୋଉ ।

ଦୈବବାଣୀ—ଦେବ ଶର୍ମା ! ଶପଥ ସ୍ମରଣ ନାହିଁ ?

ପଦ୍ମା ପିତା – ହଁ, ହଁ, ଦୈବବାଣୀ ! ଶପଥ ! କନ୍ୟାହେଲେ ସେ ହେବ ଜଗନ୍ନାଥଙ୍କ ଚରଣର ନୈବେଦ୍ୟର ଫୁଲ । ଦେବଦାସୀ, ଦେବଦାସୀ ! ଶକ୍ତି ! ଶକ୍ତି ଦିଅ ଜଗନ୍ନାଥ !

(ହାତଯୋଡ଼ି କହି କହି ଗୁଲିଲେ)

———

# ପ୍ରଥମ ଅଙ୍କ

## ପ୍ରଥମ ଦୃଶ୍ୟ

[ କୁଟୀର ]

( କେନ୍ଦୁଲି ଗ୍ରାମ—ଜୟଦେବଙ୍କ କୁଟୀର ଖୋଲା ରହିଛି, ଭିତରୁ ରାଧାମାଧବଙ୍କର ବିଗ୍ରହ ପରିଦୃଶ୍ୟମାନ । ସମ୍ମୁଖରେ ଗୋଟିଏ ଗଛମୂଳରେ ଗୋଟିଏ ପ୍ରସ୍ତର ଖଣ୍ଡଉପରେ ସମାସୀନ ଜୟଦେବ, ଘରଭିତରୁ ଶୁଭୁଥିଲା ପରାଶର କଣ୍ଠର ସଙ୍ଗୀତ, ଜୟଦେବ ଗଛ ଉପରକୁ ଗୁହିଁ ବସିଛନ୍ତି । ଆଖିରେ ଲୁହ ପୂରି ରହିଛି ।)

ପରାଶର—[ ଗୀତ ]　　ବନ୍ଦେ ନନ୍ଦ
ନନ୍ଦନ ଚରଣ [ ବନ୍ଦେ ନନ୍ଦ ]
ତାର କୋଟି-କୋଟି ଶଶୀ, ତପନ ॥
ପୂଜେ ଫୁଲ ଗନ୍ଧେ ସୁବାସ ଦେଇ,
ଗୁଣୁ ଗୀତ ଗାଏ ଗୁଞ୍ଜି ଭ୍ରମର,
ପ୍ରକାଶେ ସୁଷମା ଗିରି ନଦୀ ବନ ।

[ ପରାଶର ଗୀତ ବନ୍ଦ କରି ଆରତି କଲେ ଘଣ୍ଟି ବଜାଇ , ଆରତିର ବଳତା ନେଇ ଜୟଦେବଙ୍କ ପାଖକୁ ଆସି ଦେଖିଲେ—ଜୟଦେବ ସଂଜ୍ଞାଶୂନ୍ୟ ଭଳି ବସିଛନ୍ତି—ଡାକିଲେ ]—ଜୟଦେବ !
[ ଜୟଦେବ ଶୁଣି ପାରିଲେ ନାହିଁ ]

ପରା—ଜୟଦେବ ! ଆରତିର-
ଜୟ—(ଜ୍ଞାନ ଲାଭ କରି ଉଠିଲା ପରି ) ଓଃ ଆରତି । (ଆଘ୍ରାଣ କଲେ) ଆରତି ସାରିଲ ?
ପରା—[ଜୟଦେବଙ୍କୁ ଖାଲି ଚାହିଁ ରହିଲେ ]
ଜୟ—ମହାପାପୀ ! ରାଧାମାଧବଙ୍କର ଆରତି ଦର୍ଶନ କଲି ନାହିଁ ଆଜ ମୁଁ ।
ପରା—[ଜୟଦେବଙ୍କର ଗୋଟିଏ କାନ୍ଧରେ ହାତପକାଇ] ଜୟଦେବ !
ଜୟ—ଭାଇ ! [ ଚାହିଁଲେ ପରାଶରଙ୍କୁ ]
ପରା—ଆଖି ଲୁହ ଛଳ ଛଳ କାହିଁକି ?
ଜୟ—(ଦୁଃଖର ହସ ହସି) ଓଃ ନା, ସେ କିଛି ନୁହେଁ [ ଆଖି ପୋଛି ପକାଇ]
ପରା—ସମ୍ମୁଖରେ ରାଧାମାଧବ ।
ଜୟ—ଦୁର୍ବଳତା, ଦଣ୍ଡକର ଦୁର୍ବଳତା ସେ ମୋର ।

ପଦ୍ମ—ଦୁର୍ବଳତା, ତୁମର ? ଜୟଦେବ !

ଜୟ—(ଠାରି ଦୂରକୁ ଦେଖାଇ) ଦେଖୁଚ ପରାଶର !

ପଦ୍ମ—ପକ୍ଷୀଟିଏ, ଶାବକକୁ ଆଧାର ଦେଉଛି ।

ଜୟ—କିନ୍ତୁ ପ୍ରତିଦାନରେ ? ଶାବକଠାରୁ ସେ କଣ—

ପଦ୍ମ—ଏ ଦୁର୍ବଳତା ତୁମକୁ ସାଜେ ନାହିଁ ଜୟଦେବ !

ଜୟ—କେତେ କଷ୍ଟରେ ଆଧାର ସଂଗ୍ରହ କରି, ଚଞ୍ଚୁମୂନରେ ନେଇ ଆସିଛି ମାଆ ପକ୍ଷୀଟି ଛୁଆ ଲାଗି ତାର; କିନ୍ତୁ—

ପଦ୍ମ—ଆଘାତ ଏ ପର୍ଯ୍ୟନ୍ତ ଭୁଲି ପାରିନାହିଁ ତୁମେ, ଜୟଦେବ !

ଜୟ—ପରାଶର ! କୋଉ, ତାଙ୍କ ପଛେ ପଛେ ନନାଙ୍କୁ ହରାଇ ମୋର ଯେମିତି ଗୋଟାଏ ତିକ୍ତ ଅନୁଭୂତି ଆସିଛି, ଏ ସଂସାର ପ୍ରତି । କିଏ କାହାର ପୁଅ ? କାହିଁକି ? କାହିଁକି ? କାହିଁକି ଏ ବନ୍ଧନ ? ଏଇଆ ନାଁ ସଂସାର ! ମାୟା ! ଖାଲି ଗୋଟାଏ ମୋହ !

ପଦ୍ମ—ଏସବୁ କଅଣ ଭାବୁଚ ତୁମେ ଆଜି ଜୟଦେବ ? ଟେଣେ ରାଧାମାଧବଙ୍କ ସେବାପୂଜାରେ ବିଘ୍ନ ଘଟୁଚି । ମନେ ପଡୁନାହିଁ ?

ଜୟ—ପରାଶର ! ହଁ, ଭୁଲ କରିଚି ମୁଁ । ( ଉଠି ) ଆରତି ସରିଚି, ନାଁ ? ବେଶ୍ କରିଚ । ତୁମ ପରି ବନ୍ଧୁ ନଥିଲେ ବୋଧହୁଏ—

ପଦ୍ମ—ଭୁଲି ଠାକୁରଙ୍କର ମାତି—

ଜୟ—କିନ୍ତୁ ପରାଶର ! ମୁଁ ବୋଧହୁଏ—

ପଦ୍ମ—କଅଣ କହୁଚ ? କହୁ କହୁ ରହିଗଲେ ଯେ—

ଜୟ—ମୁଁ ଶ୍ରୀକ୍ଷେତ୍ରକୁ ଯିବି ।

ପଦ୍ମ—ଭଲ କଥା, ମୁଁ ତୁମର ଅନୁଗାମୀ ହେବି ।

ଜୟ – ତୁମେ ? ନାଁ, ନାଁ, ଘରେ ପତ୍ନୀ, ତୁମେ ଆସ ନାଇଁ ମୋ ସଙ୍ଗରେ ପରାଶର !

ପରା—ଶ୍ରୀକ୍ଷେତ୍ରରେ ତାହେଲେ କେବଳ ଅବ୍ରାହ୍ମଣମାନେ ବୋଧହୁଏ ଥାଆନ୍ତି ?

ଜୟ—ହାଁ, ଜଗନ୍ନାଥଙ୍କ ଚରଣରେ ପ୍ରଣତିର ଅଧିକାର ସମସ୍ତଙ୍କର ।

ପରା—ହଁ, ତେଣୁ ତ ସେ ଜଗତର ନାଥ—ଜଗନ୍ନାଥ ।

ଜୟ—ହଁ; କିନ୍ତୁ—

ପରା – କିନ୍ତୁ କଅଣ ?

ଜୟ—ତଥାପି—

ପରା—କିନ୍ତୁ, ତଥାପି—ଏ ସବୁର ସ୍ଥାନ ସେଠି ଆଦୌ ନାହିଁ ଜୟଦେବ ! ତୁମେ ରାଧାମାଧବଙ୍କୁ ଏଠାରୁ ନେଇ ଚାଲିଗଲେ, ମୁଁ ମଧ୍ୟ ତୁମର ସଙ୍ଗୀ ହେବି ଶ୍ରୀକ୍ଷେତ୍ରକୁ ।

ଜୟ—ମୁଁ ଗୃହହୀନ, କୁଟୁମ୍ବହୀନ, ସନ୍ନ୍ୟାସୀ, ଭୁଲିଯାଅ ନାହିଁ ପରାଶର !

ପରା – ଜ୍ୱଳନ୍ତ ଜୀବନ୍ତ ସତ୍ୟଠାରୁ ଏହା ତ ଆହୁରି ଅପାସୋରା, ମୁଁ ଭୁଲିନାହିଁ କି ଭୁଲୁନାହିଁ । ବେଶ୍, ସେ କଥାର ପରେ । (ନେପଥ୍ୟ କୀର୍ତ୍ତନ ଶବ୍ଦ) ଏଇ ଶୁଣ, ଲୋକେ ଦର୍ଶନକୁ ଆସୁଛନ୍ତି; ଦୁର୍ବଳତା ଛାଡ଼ ଜୟଦେବ ! ଆସ, ଆଗେ ଏଆଁଙ୍କ ମତ ବୁଝାଅ ।

ଜୟ—ଓଃ, ଭୁଲି ଯାଇଥିଲି ମୁଁ । ବନ୍ଧୁ ତୁମେ, ଭ୍ରମ ପ୍ରମାଦରୁ ରକ୍ଷା କରିବ ମୋତେ । ଚାଲ-- (ମନ୍ଦିର ଆଡ଼କୁ ଗଲେ)

---

## ଦ୍ୱିତୀୟ ଦୃଶ୍ୟ

### ( କେନ୍ଦୂଲି ଗାଆଁ ଦାଣ୍ଡ )

(ପରଗଣର ପଲ୍ଲୀ ରୋହିଣୀ ଓ ଦୁଇ ଜଣ ଗ୍ରାମ ସ୍ତ୍ରୀଲୋକ କଥାବାର୍ତ୍ତା ହୋଇ ଆସୁଥିଲେ)

ସରଯୂ—ଓ, ସେଇଥିକି ! ମୁଁ ବୋଇଲିକି ନୂଆବୋହୂର ତ କୋଉ ଧନ ମଠ ହୁଅ ନାହିଁ ଏମିତି !

ରୋହିଣୀ—ଭଲ କହୁଚୁ, ସଂସାରେ କଅଣ ଘଇ କରି ଲୋକେ ନାହାନ୍ତି ? ଧନ ଓଳିକର କଥା ତ ନୁହେଁ ।

ସରଯୂ—ଆଉ କଅଣ ମ.! ଜଇ ଭାଇନା କଥା କହିଲୁ ଯେ, ତାର ତିନ କୁଳକୁ ପାଣି ଦବାକୁ କେହି ବୋଇଲେ କେହି ନାହିଁ, ସେ ଏବେ ବସିଚି ବାଆଜୀ ହେଇ । ପରଶୁ ଭାଇନାର ନାହିଁ କଅଣ ? ସେ ପରା ଗିରସ୍ତି ଘଇ । ଦାଣ୍ଡମୁଣ୍ଡରେ ଏତେ ବୁଲିବାକୁ ମନ ତ ଥେଲା, ରୋହିଣୀ ଭାଉଜଠାରୁ ହାତ ଧରି ଏତେ ହୀନଅବସ୍ଥା କରିବା ଲାଭ କଅଣ ? ଏ କଅଣ ବାଆଜୀ ହବ !

ବିମଳ – ବାଆଜୀ ? କିଏ ପରଗଣର ଭାଇନା ? ଭାଉଜ ମୋର ରାଗିଲେ ରାଗୁ ପଛେ, ମୁଁ ସତଟି କହିବ । କହିବ କାଲେ ଭାଉଜ ?

ରୋହିଣୀ - ମଲା, କହୁନୁ ।

ବିମଳା—(ହସି) ମୋ ଭାଇନା ମନକୁ ତୁ ପାଇନାହୁଁ କି କଅଣ !

ରୋହିଣୀ—ଭଲ ହେଲା, ମନକୁ କ ଆସିଲେ ଆଉ ଗୋଟେ ଘରକୁ ଆଣି ଦଉନୁ ତୁ, କିଏ ତତେ ଏବେ ମନାକଲା ? ନଇଲେ ନଜେ ରହ ।

ବିମଳା—ଧିତ୍, ମୁହଁରେ କଅଣ ତୋର ବାଡ଼ ବତା ନାହିଁ ? ମୋର ପରା ସେ ଭାଇନା ଲୋ !

ସରଯୂ—ନାହିଁ, ତା କଥା ଦେଖ, ବନବନ୍ତ କଅଣ ଯେ ସେଇ ନଈକୂଳେ ବାହେଁ ବସି—ସେଇ ଜୟା ଭାଇନାଟା ସାଙ୍ଗରେ ମ !—ଝୁମ୍ପରୁ ଝାପର; ଫୁସୁରୁ ଫାସର ହଉଥିବେ ଯେ !

ବିମଳା—କିଏ ଜାଣେ ଲୋ ମାଆ ! ତାଙ୍କମାନଙ୍କ ପେଟ ଭିତର କଥା । ତୁ ଟିକିଏ ଭାଉଜ ! ଭାଇନା ଉପରେ ଆଉ କାହିଁ କାହିଁ ହବୁ ନାହିଁ ।

ରୋହିଣୀ—ହେଲେ ସେଇଠ୍ ? ହିହ ଚଢ଼ଲେ—"ହାଣ୍ଡି ଭାଙ୍ଗିଲେ ଖପରା-ନାଁ ମନ ଭାଙ୍ଗିଲେ ଗ୍ରୋପରା ।"

ବିମଳା—ହଁ ଯେ, କାଲେ କେତେବେଳେ କୋଉ କଥା ଥାଏ । ନାହିଁ ନାହିଁ ମନଷତ୍ ମନ ତ !

ରୋହିଣୀ—ଓଃ, ଯୋଉ ତ ମନଷ ! ସେଥିରେ ପୁଣି ମନ ! ଭାତ ବାଡ଼ି ଭୁଞ୍ଜି ଥର ଘର ବାହାର ହେଲ ଯେ ! କାହିଁ ଦେଖାଅଛୁ ମରଦର—

ସରଯୂ—ସକାଳେ ତ ନଈକୂଳେ ଦେଖିଥିଲି । ଆଜ କଅଣ ସେତିକ ବେଳୁ ଆସିନାହିଁ ଘରକୁ ?

ରୋହିଣୀ—କାହିଁ ? ଭାତ ତୁଅଣ ସାତ ଶୀତଳ ହେଇ ରହିଲାଣି ପରା ! ଭାତ ଯାହାକୁ ଗୋଇଠା ମାରିବ ?—

ବିମଳା—ଆଲୋ, ଭାତ ପଛେ ଗୋଇଠା ମାରୁ, ଭାଉଜ ନମାରୁ; ଭାଇନା ଯେବେ ପୁଣି ବାଆଜୀ ହୋଇଯିବ !

ରୋହିଣୀ—ହେଲେ ଏବେ, କିଏ ସାଙ୍ଗରେ ଗୋଡ଼େଇ ଯିବ ପରା । ବାଆଜୀ ହବ !

ସରଯୂ—ଯା, ଯା, ଦେଖ, ଆସିବେଣି ଅବା, ଏଠି ଦାଣ୍ଡଟାରେ ଠିଆ ହେଇ—

ବିମଳା—ଚ୍ଛି ଲୋ ସ୍ୱଭଜ, ଛୋଉ ତ ଆଗେ ପେଟ ପୋଡ଼ ପିବଣିକ କଅଣ ! କଂସେ ଗିଳିକରି ଥିଇବ ହେଇ ଶୁଅ ଯା ! ସ୍ୱଇନା ଯେତେବେଳକୁ ଆସିବେ, ଆସୁ ଥାଆନ୍ତୁ ମ ! ଚ୍ଛିଲ, ଲାଜ ମାଡ଼ୁଚି ଯେବେ, ମୁଁ ପଛେ ବାଡ଼ି ଦେବି ।

( ରୋହିଣୀର କାନ ଟାଣି ନେଇ ଗ୍ଳଲ ଭିତରକୁ )

( ସମସ୍ତେ ଗ୍ଳଗଲେ )

---

## ତୃତୀୟ ଦୃଶ୍ୟ

[ଶ୍ରୀନବର—ପୁଷ୍ପ, ଦେବାର୍ଚ୍ଚନା ମଣ୍ଡପ, ଛଢଣା ନଯୋଗ ଖଟଣୀ ଅପେକ୍ଷା କରିଛନ୍ତି ଗଜପତିଙ୍କ ଆଗମନ ) ।

ବଡ଼ପଣ୍ଡା—ହଇହୋ ! ଆଚମ୍ବିତ ସ୍ୱପ୍ନ ! ଗତ ପାହା ପାହା ହେଇ ଆସୁଛି । ଜଗନ୍ନାଥେ ସପନରେ ବିଜେ କରି ପ୍ରତ୍ୟକ୍ଷରେ ମୋତେ ଯେମିତି କହୁଛନ୍ତି—

ମହାଶୁଆର—ଆସିଥିବେ, ଆସିଥିବେ, ସେମିତି ଜଣେ କଏ ଭଗତ ନ ହୋଇଥିଲେ ବିଅଁ ସପନେଇଁବା କ ପାଖର କଥା ? କଅଣ ନାଆଁ ଟା କହିଲଟି ?

ବ: ପଣ୍ଡା—ଉହୁଥ, ଉହୁଥ ଦେଖୁଛି ! ପାସୋର ପିବ ବୋଲି ଚଟପଟ ଉଠି, ଆଗେ ଝିଅକୁ କହି ଦେଲି, ଆଲୋ କଣୋଗ୍ଯି, ଟିପି ଦେଇ ଥିବୁଟି ଟିକଏ ଏଇ ନାଆଁ ଟା । ସତକୁ ସତ ପାସୋର ହେଲଣି । କହୁଛି, କାନରେ ବାନ୍ଧୁଛି ତାକୁ ହେ । (କାନ ଫିଟାଇ, ଲେଖା ପଢ଼ି) ହେଇଟି, ଦେବଶର୍ମା ।

ମନ୍ତ୍ରୀ:—ତୁରନ୍ତ ଏ କଥା ରାଜ୍ୟରେ ଏତଲା କର ।
ବ: ପଣ୍ଡା—ଚଦେବାର୍ଚ୍ଚନ ବନ୍ଦୁ ।
ରାଜ୍ୟ ଖୁଣ୍ଟିଆ—

( ଦୁଇଟି ବେତ ବଜାଇ ବଜାଇ ବନ୍ଧ କନ୍ଧ ଆସୁଛି—)
ଯା ଆଡ଼ଆ, ରାଜ୍ୟ ଗୁଡ଼, ରାଜ୍ୟ ଗୁଡ଼, ରାଜ୍ୟ ଗୁଡ଼ ।

ବ: ପଣ୍ଡା—ରାଜ୍ୟରୁ ବଜେ ହେଉଛନ୍ତି । ଆରେ କାହାଳିଆ—

( କାହାଳିଆ କାହାଳି ଫୁଙ୍କିଲେ, ତେଲଙ୍ଗିବାଜା ବାଜି ଉଠିଲା )

ଭାଟ—( ରାଜ ପ୍ରଶସ୍ତି ଗାଇଲା )

ଗୌଡ଼ବାଡ଼ କର୍ଣ୍ଣାଟ ଜତେ ଧସ୍ତ କରେ ଚଉଶର
ଗଙ୍ଗା ସେ ଗୋଦାବରୀ ମାରେ ଜୟ ଜୟ କଳିଙ୍ଗ ବୀର,
ମାନୋଦ୍ଧାରଣ ଶରଣପଞ୍ଜର ମାନଧାତା
ବୈରିଗଞ୍ଜନ, ଶିଷ୍ଟପାଳନ, ଦୁଷ୍ଟ ପରତାପ ଦାତା ।
ଜୟ ତୁ ଜୟ ତୁ ବୀର ଶ୍ରୀ ଗଜପତି ଗୌଡ଼େଶ୍ୱର
ନବକୋଟି କର୍ଣ୍ଣାଟୋତ୍କଳ ପ୍ରତାପ ବୀରବର
ଶ୍ରୀ ଶ୍ରୀ ଶ୍ରୀ କଳିଙ୍ଗକୁଳବର୍ଗାଧୀଶ୍ୱରସ୍ୟ ହେ ଜୟ ।

( କାହାଳି ବାଜି ଉଠିଲା )

[ ଗଜପତି ମଣ୍ଡପରେ ଦର୍ଶନ ଦେଲେ ।
ଜ୍ୟୋତିଷ ମଙ୍ଗଳ ପଢ଼ିଲେ ]

ଜ୍ୟୋତିଷ—ମଙ୍ଗଳଂ ଭଗବାନ୍ ବିଷ୍ଣୁର୍ମଙ୍ଗଳଂ ମଧୁସୂଦନଂ ।
ମଙ୍ଗଳଂ ପୁଣ୍ଡରୀକାକ୍ଷଂ ମଙ୍ଗଳଂ ଗରୁଡ଼ଧ୍ୱଜଂ ।
ମାଧବୋ ମାଧବୋ ବାଚି ମାଧବୋ ମାଧବୋ ହୃଦି
ସ୍ମରନ୍ତି ସାଧବା ନିତ୍ୟଂ ସର୍ବ କାର୍ଯ୍ୟେଷୁ ମାଧବ ।

( ଗଜପତି ଦେବାର୍ଚ୍ଚନ ଗୃହ-ପ୍ରବେଶ କଲେ, ସେବା-ଦାସୀମାନେ ମଙ୍ଗଳ ଗାଇଲେ । ଶଙ୍ଖ ଓ ଘଣ୍ଟି ବାଜିଲା )

ସେବାଦାସୀମାନେ—            ( ଗୀତ )

ନଟୀଏ ଗାଇଲେ ଶୁଭେ ମଙ୍ଗଳ ବାଜଣା,
ନାରଦ ରଚିଲେ ଆସି ବୀଣା ଆଳାପନା
ଜୟ ଜୟ ରାମଚନ୍ଦ୍ର,
ରତ୍ନ ସିଂହାସନେ ବିଜେ ଅଯୋଧ୍ୟା ନରେନ୍ଦ୍ର ॥
ପୁରୁଁ ଶୁଭେ ହୁଳହୁଳି ଶଙ୍ଖ ମାଙ୍ଗଳିକ,
ରବିକୁଳ—ରବି ଶିରେ ଦିଏ କେ ତିଳକ
ଜୟ ଜୟ ରାମଚନ୍ଦ୍ର,
ରତ୍ନ ସିଂହାସନେ ବିଜେ ଅଯୋଧ୍ୟା ନରେନ୍ଦ୍ର ॥

ଛୁ: ଖୁ:—ବଡ଼ପଣ୍ଡା ଆପଣେ ! ଶ୍ରୀମୁଖରୁ ହୁକୁମ ହୋଇଛି, ଆପଣ ଟିକିଏ ରହିବେ, କଅଣ କଥା ଅଛି ।

ବଡ଼ପଣ୍ଡା—ହଁ, ମୁଁ ତ ବଳେ ରହନ୍ତି । ମୋର ମଧ୍ୟ ଜଣାଇବାକୁ ଅଛି । ( ପୁଣି କାହାଳି ବାଜି ଦେବାର୍ଚ୍ଚନ ଶେଷ ହେଲା । ଗଜପତି ମଣ୍ଡପ ଭିତରୁ ଫେରିଲେ)

ଜ୍ୟୋତିଷ—            ( ଦିନ ପଞ୍ଜିକା ପାଠ)

ବୀର ଶ୍ରୀ ଗଜପତି ଗୌଡ଼େଶ୍ୱର ନବକୋଟି କର୍ଣ୍ଣାଟୋତ୍କଳ ବର୍ଗେଶ୍ୱର ବୀରାଧିବୀରବର ଶ୍ରୀ ଶ୍ରୀ ଶ୍ରୀ ମହାରାଜଙ୍କଃ ବିଜୟେ ଶୁଭରାଜ୍ୟେ ଅଦ୍ୟ ଆଷାଢ଼ମାସୀ କୃଷ୍ଣପକ୍ଷେ ଅମାବାସ୍ୟାୟାଂ ତିଥୌ ପଣ୍ଡିତବାସରେ ଆର୍ଦ୍ରା ନାମଧେୟ ନକ୍ଷତ୍ରେ ମିଥୁନ ରାଶିସ୍ଥିତ ଚନ୍ଦ୍ରମସି ତୈତିଳକରଣେ, ଶୁଭଯୋଗେ ଶ୍ରୀ ଶୁଭମସ୍ତୁ ଶ୍ରୀ ଶୁଭମସ୍ତୁ ଶ୍ରୀ ଶୁଭମସ୍ତୁ ।

( ରାଜଗୁରୁ ଆଶୀର୍ବାଦ କଲେ, ବଡ଼ପଣ୍ଡା ଶ୍ରୀ ଜୀଉଙ୍କର ଚରଣ ତୁଳସୀ ଦେଲେ, ଗରବଡ଼ୁ ପାଣି ଟେକିଦେଲେ, ଶ୍ରୀଅଙ୍ଗ ସାଆନ୍ତ ପୋଛୁ ବଢ଼ାଇଲେ )

ମହାରାଜା—ବଡ଼ପଣ୍ଡାଏ ।

ବ: ପଣ୍ଡା—ମଣିମା ! ( ପାଖକୁ ଘୁଞ୍ଚି, ମୁହଁରେ ହାତଦେଇ )

ମହାରାଜା—ଗୋଟିଏ ଅଦ୍ଭୁତ ସ୍ୱପ୍ନ ପାହାନ୍ତାରୁ ମୁଁ ଦେଖିଲି । ସ୍ୱୟଂ ଜଗନ୍ନାଥ ସ୍ୱଜେ ହୋଇ ଆଜ୍ଞା ଦେଲେ କି ଦକ୍ଷିଣରୁ ଦେବଶର୍ମା ବୋଲି ଜଣେ ଗରିବ ବ୍ରାହ୍ମଣ ଶ୍ରୀକ୍ଷେତ୍ରକୁ ଆସିଛନ୍ତି । ତାଙ୍କର ଗୋଟିଏ କନ୍ୟା—ତାଙ୍କ ନାମ ପଦ୍ମାବତୀ । ଦେବଶର୍ମା ସତ୍ୟ କରିଥିଲେ, ସେ କନ୍ୟା ହିଁଅଁଙ୍କୁ ସମର୍ପଣ କରିବେ । ଏବେ ହିଁଅଁଙ୍କ ମନ ଯେ ତାଙ୍କୁ କହ, କେନ୍ଦୁବିଲ୍ୱ ଗ୍ରାମରେ ଜୟଦେବ ପଣ୍ଡିତଙ୍କୁ କନ୍ୟାଙ୍କୁ ଦେଲେ ପ୍ରଭୁ ନିଜେ ପାଇବା ପରି ମଣିବେ । ସେ ଜୟଦେବ ମଧ୍ୟ କୁଆଡ଼େ ଆମ ଏଠାକୁ ଆସିଛନ୍ତି ।

ବଡ଼ପଣ୍ଡା—ଓହୋ ! କାଳିଆର ଅଦ୍ଭୁତ ଲୀଳା, ମଣିମା ! ଏଇ ପାହାନ୍ତରୁ ଠିକ୍ ସେହି ସପନ ମୁଁ ଦେଖିଛୁ । ଏହିକ୍ଷଣି ମହାସୁଆରଙ୍କୁ କହୁଥିଲି, ଗୁମ୍ଫରେ ଜଣା କରିବାକୁ ।

ମହାରାଜା—ଏଣେ ମତେ, ତେଣେ ତୁମକୁ, ଏକା ସ୍ୱପ୍ନ !

ବ: ପଣ୍ଡା—ମଣିମା !

ମହାରାଜା—( ହସି ) ଲୀଳାମୟଙ୍କର ଲୀଳା ! ତେବେ ତୁମେ ହିଁଅଁଙ୍କ ପାଇଁ ତଲାସ କର, ସେମାନେ କୋଉଠି ଅଛନ୍ତି ।

ବ: ପଣ୍ଡା—ହିଁଅଁଙ୍କ ମହଣ୍ଡି ଆଜ । ଏ ଗହଳରେ ଠାବ କରିବା କ ସହଜ କଥା ମଣିମା ? ତେବେ ଏ କଥା ସତ ଯେ, ସେମାନେ ଦର୍ଶନକୁ ନିଶ୍ଚୟ ଆସିବେ ।

ମହାରାଜା—ଦେଉଳ ଦୁଆରୀମାନଙ୍କୁ କହିଥାଅ, ପଣ୍ଡିତ ପଣ୍ଡିତ ଯାତ୍ରୀଙ୍କି ଖୁଣ୍ଟି ପାରିବେ ଅବା । ହଁ, ଦେବଶର୍ମା, ଦକ୍ଷିଣିଆ ବ୍ରାହ୍ମଣ, ଝିଅଟିଏ ପୁଣି ସଙ୍ଗରେ, ବଳେ ଚିହ୍ନା ପଡ଼ିଯିବେ । ବାକି, ଜୟଦେବଙ୍କ କଥା—

ବ: ପଣ୍ଡା—ଶୁଣିଲୁ କାଲି, ମହିମା ଚନ୍ଦନଲାଗି ବେଳେ କିଏ ହ'ଜଣ ଆସି ବଡ଼ ଦେଉଳରେ ଶ୍ଳୋକ ପଢ଼ୁଥିଲେ । ଭାରି ମିଠା ଗଳା । ବଡ଼ ପଣ୍ଡିତ ବୋଲି ଲୋକେ କହୁଥିଲେ, ସେଇ ହୋଇଥିବେ ଅବା ।

ମହାରାଜା—ଆଚ୍ଛା—କେନ୍ଦୁବିଲ୍ୱଟା କେଉଁଠି ?

ବ: ପଣ୍ଡା—ବେଶି ବାଟ ନୁହେଁ ମହିମା ! ବାଲିଅନ୍ତା ଚକଡ଼ାରେ । କେନ୍ଦୁବିଲ୍ୱକୁ ଆମ ଲୋକେକ କଥାରେ କେନ୍ଦୁବିଲି ବୋଲି କହନ୍ତି । ଥୋକେ କେନ୍ଦୁଲି କହନ୍ତି—ଯେ ସେଇଟା ଗାଉଁଲି କଥା ।

ଜ୍ୟୋତିଷ—ହଁ, କେନ୍ଦୁବିଲ୍ୱ ବୋଲି ଏଡ଼େ ନାଆଁଟେ କିଏ କହୁଚି ? ହଉ ହଉ କେନ୍ଦୁଲି ହେଲା । ସେଠିଉ ତ କାପେଡ଼ ମହାଜନ ସବୁ ହକ ଆଣନ୍ତି କେନ୍ଦୁଲି କସ୍ତା ଯେ, ବାଲିଘାଇ ବାଟେ ଆସନ୍ତି ବୋଲି କହନ୍ତି ।

ବ: ପ:—ହଁ ।

ଜ୍ୟୋତିଷ—ମୁଁ ସେଠା ଦେଖିଛୁ ମହାରାଜା ! ଗତ ସନ ଅକ୍ଷିତୃତୀୟା ଦିନ ଘରୁ ପିଲାଏ ବାହାରିଲେ ତ୍ରିବେଣୀ ସ୍ନାହାନକୁ ଯେ—

ମହାରାଜ—ଆଃ, ତୁନି ହୁଅ, ତ୍ରିବେଣୀ ସଙ୍ଗେ ସେ ଠାଆଁର କଅଣ ଅଛି ହେ ? ମୁଁ କେନ୍ଦୁବିଲ୍ୱ-ଏଇ ଯାହାକୁ ତୁମେ କେନ୍ଦୁଲି ବୋଲି କହୁଚ—

ବ: ପ:—ହଁ, ମହିମା ! କେନ୍ଦୁଲି ଶାସନ ସୁଜାନଗର ପାଟଣା—

ମହାରାଜା—ପୁଣି ସୁଜାନଗର ଗୋଟାଏ କଅଣ ?

ବ: ପ:—ତାକୋଉ କହନ୍ତ ମହିମା !

ଜ୍ୟୋତିଷ—ମହାରାଜା ! ମୁଁ ତା'ର କଥା କହୁଚ । ସେଇ କେନ୍ଦୁଲି ଗାଆଁର ଦୁଇପାଖରେ ପ୍ରାଚୀ ଆଉ କୁଶଭଦ୍ରା ନଈ, ଗାଆଁଠୁ ଡାକେବାଟ ଦେବ—ସେଇଠି ତ୍ରିବେଣୀ ତୀର୍ଥ । ଅକ୍ଷୟ-ତୃତୀୟାଦିନ ସେଠି ବୁଡ଼ ପଡ଼େ । ଆମେ ତ ମହିମା ! ଗତରବ ମୁଣ୍ଡ । ଗଙ୍ଗାସ୍ନାହାନକୁ ଯିବୁଁ ଏ ଭାଗ୍ୟ କାହିଁ ?

ମହାରାଜା—ଏଇଟା କ'ଣ ଗଙ୍ଗା ?

ଜ୍ୟୋତିଷ—ପଦ୍ମପୁରାଣରେ କହିଛନ୍ତ, ଅକ୍ଷୟ ତୃତୀୟା ଦିନ ତ୍ରିବେଣୀରେ ଗଙ୍ଗା ଆବିର୍ଭୂତ ହୁଅନ୍ତ । ସେଦିନ ସେଠି ସ୍ନାହାନକଲେ ଗଙ୍ଗାସ୍ନାନ ଫଳ ।

ବ: ପ:—ହଁ, ମହିମା ! ଗଙ୍ଗାମାଧବ ସମ୍ବାଦରେ ମଧ୍ୟ ଏକଥା ଲେଖାଅଛୁ ।

ମ: ରା:—ଜୟଦେବଙ୍କ ଘର ତେବେ ସେଇଠି ? ନାଁ ?

ମହାଶୁଆର—ମୁଁ ଶୁଣିଛୁ ମହିମା ! ଆମ ବାଲସାଈ ମୁଣ୍ଡେ ଦୁଇ ଜଣ କଏ ଆସି ବଉଳ ମୂଳେ ଠୁଙ୍ଗିରେ ଅଛନ୍ତ । ସବୁବେଳେ ତାଙ୍କର ଲେଖା, ପଢ଼ା, ଶ୍ଳୋକ, ଗୀତ ଚାଲିଛି । ସେ ତ ଆଉ ନୁହନ୍ତ ?

ବ: ପ:—ଶ୍ରୀଗୁଣ୍ଡିଚା ବେଳ, କେତେ ଏବେ କୁଆଡ଼ୁ ଯାତ୍ରୀ ଆସୁଛନ୍ତ, କଏ ଖବର ରଖିଚ ?

ମହାରାଜା—ତଲାସ କର, ମହାପ୍ରଭୁଙ୍କ ଆଜ୍ଞା, ନିଶ୍ଚେ ଠାବ ହୋଇଯିବ ।

ବ: ପ:—ଭଲ ମହିମା ! ନହରକୁ ବିଜେ ହୁଅନ୍ତୁ । ମୁଁ ତଲାସ ନେଇ ଜଣା କରିବି ।

ମହାରଜା—ସଞ୍ଜ ଆଗରୁ ଆଜ ଯେମିତି ବାହାର ମିଳିବ ।
( ଭିତରକୁ ବାହାରିଲେ )

ଝାଡୁଦାରଆ—( ଝାଡୁଦାର ଫୁଙ୍କିଲା )

ଘୁମୁଦୁଆଣ୍ଡ—( ଯୋଡ଼ବେତ ବଜାଇ ଆଗେ ଆଗେ ଚାଲିଲା ଘୁମୁଘାଡ଼, ଘୁମୁଘାଡ଼, ଘୁମୁଘାଡ଼ କହି । )

---

## ଚତୁର୍ଥ ଦୃଶ୍ୟ

[ପୁରୀର ଗଳି ରାସ୍ତା—ଜୟଦେବଙ୍କ କୁଟୀର ସମ୍ମୁଖ । ଦେବଶର୍ମା ଓ ପଦ୍ମାବତୀ । ପଦ୍ମାବତୀଙ୍କ ହାତରେ ଜଗନ୍ନାଥଙ୍କ ଆଜ୍ଞାମାଳ ।]

ପଦ୍ମା—ନନା ! କୋଉଠିକି ଯିବା ? ଆଉ କେତେ ବାଟ ?

ଦେବ—କେମିତି କହିବି ମାଆ ! ପୁରୀ ସହର ଏ, ଲୋକେ କହିଲେ, ଜୟଦେବ ପୁରସ୍ତମରେ ଅଛନ୍ତି, ଖୋଜୁଛି ତ—ଦେଖାଯାଉ !

ବଡ଼ପଣ୍ଡା—(ପଛରୁ ଆସି) ହଇହେ ! ଅବଧାନ ! ଆପଣଙ୍କ ନିବାସ କୋଉଠି କି ?

ଦେବ—ବହୁତ ଦୂର, ଦକ୍ଷିଣ ।

ବ:ପ:—ଆପଣଙ୍କର ଏଇଟି କ'ଣ ଝିଅ ?

ଦେବ—ହଁ, କାହିଁକି ପଚାରିବା ହେଲେ ?

ବ:ପ:—ହଁ ପଚାରିଲି !

ଦେବ—କିଛି କାର୍ଯ୍ୟ ଥିଲା ?

ବ:ପ:—ଆପଣଙ୍କ ନାଆଁ କ'ଣ ଦେବଶର୍ମା ?

ଦେବ—ସବୁ ଜାଣିଲା ପରି କଥା କହିଲ ଗୋସେଇଁ !

ବଡ଼ — ଏ ଝିଅଟି ନାଆଁ ପଦ୍ମାବତୀ ତ ?

ଦେବ — ମହାପୁରୁ କିଏ ଆପଣ, ମୁଁ ତ ଚହ୍ନିପାରୁ ନାହିଁ । ପୁରସ୍ତମ ପ୍ରେ, ଏଠି ସମସ୍ତେ ଦେବତା ! ( ପାଦଛୁଇଁବାକୁ ଉଦ୍ୟତ )

ବଡ଼ — ଆହା-ହା, ପ୍ରେ କଅଣ କରୁଛନ୍ତି ? ପରମଭକ୍ତ ଆପଣ, ମୋତେ ପାପରେ ବୁଡ଼ାନ୍ତୁ ନାହିଁ ଅବଧାନ !

ଦେବ — ଆପଣ କିଏ କହିଲେ ତ ନାହିଁ ?

ବଡ଼ — ମୁଁ, ମହାପ୍ରଭୁଙ୍କର ଜଣେ ସେବକ । ଦେଉଳର ବଡ଼-ପଣ୍ଡା । ଆପଣ ଜୟଦେବଙ୍କୁ ଖୋଜୁଛନ୍ତି ନା ?

ଦେବ — ଆପଣ ସେ କଥା କେମିତି—

ବଡ଼ — ମୁଁ ଜାଣିଛି ।

ଦେବ — ଜୟଦେବ କୋଉଠି ଥାଉଚନ୍ତି, ଜଣାକ ?

(ପରାଶର କବାଟ ଫିଟାଇ ଶୁଣିଲେ )

ବଡ଼ — ଜୟଦେବ ଶ୍ରୀକ୍ଷେତ୍ରକୁ ଆସିଛନ୍ତି ଶୁଣିଲି, ବାକି —

ଦେବ — କେହି ତ ହେଲେ କହି ପାରୁ ନାହାନ୍ତି, ଜୟଦେବ କୋଉଠି ଥାଉଚନ୍ତି ।

ପରାଶର — ଆପଣମାନେ କାହାକୁ ଖୋଜୁଛନ୍ତି ?

ବଡ଼ — ଆପଣଙ୍କ ନିବାସ ?

ପରା — କେନ୍ଦୁଲି ।

ବଡ଼ — ତାହାହେଲେ ତ ଆପଣ ବୋଧହୁଏ ଜୟଦେବଙ୍କୁ —

ପରା — ହଁ, ତାଙ୍କୁ ଜାଣେ । ଏଇ ତାଙ୍କର ବସାଘର ।

ଦେବ — (ହାତଯୋଡ଼ି) ଧନ୍ୟ ଧନ୍ୟ ଜଗନ୍ନାଥ ! ପଦ୍ମା ! ଆ, ମାଆ; ଆ, ତୋର ସ୍ୱାମୀ ଏଇଠି ଅଛନ୍ତି ।

ପରା — ସ୍ୱାମୀ ! କିଏ ?

ବଡ଼ — ଆପଣ ଜାଣନ୍ତି ନାହିଁ, ଏଇ କନ୍ୟା ଜୟଦେବଙ୍କ ପତ୍ନୀ ।

ପଣ୍ଡା—ଜୟଦେବ ତ ଆଜନ୍ମ ବ୍ରହ୍ମଚାରୀ, ସନ୍ନ୍ୟାସୀ, ତାଙ୍କର ପତ୍ନୀ ! ଅସମ୍ଭବ କଥା ।

ବଡ଼ୁ—ହଁ ଆଜ୍ଞା, ଜଗନ୍ନାଥଙ୍କର ଆଜ୍ଞା—ଏଇ କନ୍ୟା ଜୟଦେବଙ୍କୁ ବିବାହ କରିବ ।

ପଣ୍ଡା—ଆପଣମାନେ କଅଣ ପାଗଳ ହେଲେ ? ଜଗନ୍ନାଥଙ୍କର ଆଜ୍ଞା ! କଅଣ ଗୁଡ଼ାଏ କହୁଛନ୍ତି ଏ ସବୁ ? କହିଲି ପରା ଜୟଦେବ ବ୍ରହ୍ମଚାରୀ ।

ଦେବ—କିନ୍ତୁ; ଜଗନ୍ନାଥଙ୍କ ଆଦେଶ । ମୁଁ କନ୍ୟାର ପିତା ।

ପଣ୍ଡା—ଏ କନ୍ୟା—ସାକ୍ଷାତ ଲକ୍ଷ୍ମୀ ! ଜୟଦେବ ଦରିଦ୍ର, କି ଅସମ୍ଭବ !

ବଡ଼ୁ—ଅସମ୍ଭବ ମଧ୍ୟ ସମ୍ଭବ ହୁଏ ମହାଶୟ ! ସେଅଁଙ୍କ ଇଚ୍ଛାରେ ।

ପଣ୍ଡା—କିନ୍ତୁ ଏ ବିବାହ—

ବଡ଼ୁ—ଆପଣ ବୋଧେ ଜାତିକଥା ଭାବୁଚନ୍ତି ? ଏ ମହାଶୟଙ୍କ ନାମ ଦେବଶର୍ମା, ଦାକ୍ଷିଣାତ୍ୟ ବ୍ରାହ୍ମଣ । ଆମ ଉତ୍କଳୀ ବ୍ରାହ୍ମଣଙ୍କର ବନ୍ଧୁ ବାନ୍ଧବ। ତ ନୂଆ ନୁହେ ଦକ୍ଷିଣରେ ? ଆଜି ଆଜି ଦେଶ କି ବଙ୍ଗଳା ସାଙ୍ଗରେ ସିନା ଆମର ବନ୍ଧୁ ବାନ୍ଧବ। ଅଚଳ ।

ପଣ୍ଡା—ଆସ୍ତୁ, ଆପଣମାନେ ଆଗେ ଭିତରକୁ ଆସନ୍ତୁ ! ଏଠି ବାହାରଟାରେ ଠିଆ ହୋଇ ରହିଲେ ଯେ ! ଆସି ବସନ୍ତୁ, ଜୟଦେବ ସମୁଦ୍ରସ୍ନାନକୁ ଯାଇଚନ୍ତି, ଏଇଲେ ଫେରିବେ ।

ବଡ଼ୁ—ଚାଲନ୍ତୁ ମହାଶୟ !

ଦେବ—ଚାଲ ମାଆ ପଦ୍ମା ! (ପ୍ରସ୍ଥାନ)

---

## ପଞ୍ଚମ ଦୃଶ୍ୟ

( ପୁଣ୍ୟ ବଡ଼ଦାଣ୍ଡରେ ଜଣେ ଭିକାରୀ ଗାଇ ଗାଇ
ଖଞ୍ଜଣୀ ବଜାଇ ବଜାଇ ଚାଲିଛି )

(ଗୀତ)

ଚକା ନୟନକୁ ଚାହିଁ ଗରିବ ଜଣେ,
ଥକା ହୋଇ ଡକା ପାରି ଗୁହାରି ଭଣେ ॥୦॥
ଦୀନବନ୍ଧୁ ନାମ ହରି ! ବହିଛ ମିଛେ,
ମୋପରି ଗରିବ ପଛେ ଧାଇଁଛ ପଛେ,
ଆଉ ନୟନେ ଅରେ— ଚାହିଁଲେ ଦୁଃଖ ସରେ,
ଦୀନବନ୍ଧୁ ନାମରେ— କଳଙ୍କ ନ ଚାହିଁଲେ
ଜଗବନ୍ଧୁ ହେ ! ଜଗବନ୍ଧୁ ହେ !
ହସିବେ ସିନା ଜଗତେ ବଇରୀ ଯଣେ । ୧ ।
ପତିତପାବନ ବୋଲି ବୋଲାଅ ଯେବେ,
ମୋପରି ପତିତ କାହିଁ ଦେଖିଛ କେବେ ?
ମୋତେ ଯେବେ ହେ ହରି ! – ଦେବନି ପାରିକରି,
ଚରଣ ତଳେ ଦେବ !— ଏ ପାପୀ ଠାବହେବ,
ଜଗବନ୍ଧୁ ହେ ! ଜଗବନ୍ଧୁ ହେ !
ଗଣିବ ତେବେ ମୁଁ ସିନା ଖାମିଦ ପଣେ । ୨ ।

—

## ଷଷ୍ଠ ଦୃଶ୍ୟ

(ଜୟଦେବଙ୍କ ବସାଘର ଆଗରେ ପଦ୍ମାବତୀ, ଦେବଶର୍ମା ଓ ବଡ଼ପଣ୍ଡା)

ଦେବ—ମାଆ ପଦ୍ମା ! ଜଗନ୍ନାଥ ତୋତେ ଦେଇଥିଲେ, ତୋହର ଭଲ ମନ୍ଦ ବରାଦ ସେଇ କରିବେ । ତୁ ତ ମୋର ମୁହଁ— ତାଙ୍କରି ଆଦେଶରେ ମୁଁ ତୋତେ ଏଠିକି ନେଇ ଆସିଲି, ତୋର ସ୍ୱାମୀ ତୋତେ ଗ୍ରହଣ କରିବାକୁ କୁଣ୍ଠିତ । ତାର ବ୍ୟବସ୍ଥା ସେଇ ଜଗନ୍ନାଥ କରିବେ । ମୋର ଆଉ ବଳ କଅଣ ? ସ୍ୱାମୀ ଦ୍ୱାର ଛଡ଼ା ସତୀର ଅନ୍ୟ ଗତି ନାହିଁ; ଜଗନ୍ନାଥଙ୍କ ଚରଣରେ ନିର୍ଭର କରି ତୋତେ ଏଇଠି ଛାଡ଼ିଦେଇ ଯାଉଛି, ଏଣିକି ତୁ ଜାଣୁ, ତୋର ସ୍ୱାମୀ ଜାଣନ୍ତୁ—କି ଜଗନ୍ନାଥ ଜାଣନ୍ତୁ ।

ବଡ଼—ଆଉ ଆମର ବଳ କଅଣ ? ଜୟଦେବ ତ ଏକାବେଳେ ନାରାଜ ହୋଇ, ଆମ୍ଭମାନଙ୍କୁ ନ ଚକାଇ—

ଦେବ—ଜଗନ୍ନାଥଙ୍କ ଇଚ୍ଛା—ଥା, ମାଆ, ଗଲି ( ମୁଣ୍ଡ ଆଉଁଷି) ତୁ ଜଗନ୍ନାଥଙ୍କ ଚରଣର ନିବେଦିତା ଫୁଲ—ତୁ ବୁଝ୍, ସେ ବୁଝନ୍ତୁ । ଥାଆ, ମାଆ, ମୋର ଆଉ କଅଣ ବଳ ? (ଏକମୁହାଁ ହୋଇ ଲୁହ ପୋଛି ଚାଲିଗଲେ ବଡ଼ପଣ୍ଡାଙ୍କ ସହିତ) ଆସନ୍ତୁ, ଆସନ୍ତୁ ।

(ଦେବଶର୍ମା ଆଉ ଫେରି ଚାହିଁ ନାହାନ୍ତି ପଦ୍ମାବତୀଙ୍କ ଅବସ୍ଥା, ପଦ୍ମାବତୀ ସଜଳ ଆଖିରେ ତାଙ୍କ ଯିବା ବାଟକୁ ଚାହିଁ ରହିଲେ, ଘନ ଘନ ନିଃଶ୍ୱାସ ମାରି । )

ପରାଶର —(ଭିତରୁ ଆସିଲେ ଅଳ୍ପବେଳ ପରେ, ପଦ୍ମାବତୀଙ୍କୁ ଦେଖି ଚମକିତ ହୋଇ ପଚାରିଲେ) ତୁମେ, ଏକା ! ସେମାନେ—?

ପଦ୍ମା—ଚାଲିଗଲେ ।

ପରା —ଚାଲିଗଲେ ?

ପଦ୍ମା—ପତି ଚରଣ ବିନା ସ୍ତ୍ରୀର ଆଉ ଗତି କଅଣ ? ସେଇ ତାର ଘର, ସେହି ତାର ଦ୍ୱାର, ସେଇ ତାର କୋଟି ତୀର୍ଥ । ମୁଁ ଆଉ କୁଆଡ଼େ ଯିବି ?

ପରା—କିନ୍ତୁ ଦେବ ! (କଅଣ ଭାବିଲେ)

ଜୟ—(ଫୁଲଡାଲିସହ ଆସିଲେ) ଯାଇନାହିଁ ତୁମେ—କି ଅସମ୍ଭବ ! ସେମାନେ କାହାନ୍ତି ପରାଶର ! ସେ ଏକା ଅଛନ୍ତି ଯେ—

ପରା—ସେମାନେ ଦେବୀଙ୍କୁ ଏକା ଛାଡ଼ିଦେଇ ଚାଲିଗଲେ ।

ଜୟ—ଏ କେମିତି କଥା ?

ପଦ୍ମା—ଦେବ ! ସ୍ୱାମୀ ପଦସେବା ସ୍ତ୍ରୀର ଏକମାତ୍ର ଧର୍ମ—ମୋର ଆଶ୍ରୟ ଆଉ କୋଉଠି ? ଜଗନ୍ନାଥଙ୍କ ଆଦେଶ - ଆପଣ ମୋର ସ୍ୱାମୀ—ଦେବତା !

ପରା—ଜୟଦେବ ! ଦେବତାର ଆଦେଶ, ଦେବତାର ଇଚ୍ଛା—

ଜୟ—ସେ ! ଅସମ୍ଭବ, ସେ ଅସମ୍ଭବ—ନା—ନା ଜଗନ୍ନାଥ ! ଏ ଅସମ୍ଭବ । (ଆଖିମୁଦି କାନ୍ଦିବାକୁ ଲାଗିଲେ)

ପରାଶର—[ ଇତ୍ୟବସରେ ପଦ୍ମାବତୀଙ୍କୁ ଇଙ୍ଗିତ ଦେଲେ ଜୟଦେବଙ୍କ ଗଳାରେ ଫୁଲମାଳ ଦେବାକୁ ] ଏହି ମାତ୍ର ଅବସର ଦେବି !

ପଦ୍ମା—[ମାଳଟି ଜୟଦେବଙ୍କ ଗଳାରେ ଦେଲେ ଓ ପାଦତଳେ ପ୍ରଣାମ କଲେ ଶୀଘ୍ର ]

**ଜୟ**—(ଗୃହିଁ ଘୂଞ୍ଚିଯାଇ ମାଳା କାଢ଼ୁ କାଢ଼ୁ) ଆଃ ! ସେ କଅଣ ? ସେ କଅଣ କଲ ? ଜଗନ୍ନାଥ ! ଜଗନ୍ନାଥ ! ! ଜଗନ୍ନାଥ ! ! !
( ଥର ଥର ପଡ଼ିଯିବାବେଳେ ପରାଶର ପଛରୁ ଧରିନେଲେ ! ହାତ ଛୁଡ଼ିଯାଇ ହାରଟି ବେକରେ ରହିଲା )

**ପରା**—ଜୟଦେବ !

**ପଦ୍ମା**—( ପଦ ଛୁଡ଼ ଉଠି ଠିଆହେଲେ ଓ ଗୃହିଁ ରହିଲେ ସଜଳ ଆଖିରେ )



## —ଦ୍ୱିତୀୟ ଅଙ୍କ—

### ପ୍ରଥମ ଦୃଶ୍ୟ

( କେନ୍ଦୁଲି ଗାଁ—ପରାଶରଙ୍କ ଘର )

ରୋହିଣୀ—( ବାଡ଼ାର ଅଗଣା ଝରକ ସାରୁଥିଲେ, ବିମଳା ଠିଆ ହେଲଣି ସେ ନଜର ନାହିଁ ତାଙ୍କର )

ବିମଳା—( ରୋହିଣୀ ଘର ଭିତରକୁ ପଶିଯିବା ବେଳକୁ ) କଲେ ଭାଉଜ ! ଦୁଆର ଘର ତ କଅଣ ଆଜ ଭାରି ନଡପଲ କର ପକଉଚ ? ଭାଇନା ଆସିଛନ୍ତି ବୋଲି କଲେ ? ପଦ୍ଦରେ ହେଲି ଆସି ଠିଆ ହେଇଚ ଯେ, ପଦେ କହୁନୁ ଆସ ବୋଲି କି ବସ ବୋଲି ।

ରୋହିଣୀ—ମୋର ନନ୍ଦସ ନାଇଲେ ବିମଳ ! ତୁ ଏବେ ଆସି ଠିଆ ହେଲୁଣି କେତେବେଳୁ ? ଦାଣ ଅଛୁ ଲେ ! ଜମା ଆଖି ପଡ଼ି ନ ଥିଲି ।

ବିମଳା—କାହିଁକି ଆଖି ପଡ଼ିବ ଲେ ? ଆଖିକି ଚର କାଇଁ ମୋ ଉପରେ ପଡ଼ିବାକୁ ? ଭାଇନା ତସ—

ରୋହିଣୀ—ଗ୍ଲେପରିଟାଏ ହେଲୁଣି ତୁ ! ଦାଣ୍ଡଟା ଟି ! କେତେ ଟାଟେଗ କରୁଚୁ ମ, କିଏ ଯେବେ ଶୁଣିବ ?

ବିମଳା—ମଲି । ମୁଁ ତ ଶୁଣେଇକରି କହୁଛି । ଆସ ହେ ଗାଆଁ ଲୋକେ ! ଶୁଣ, ପରାଶର ଭାଇନା କାଲି ରାତିରେ ପୁରୁଷୋତ୍ତମରୁ ଆସିଛନ୍ତି ଯେ—ଭାଉଜକୁ ମୋର—

ରୋହିଣୀ—(ଆସି ମୁହଁ ମୁହଧରି) ଚୁପ୍ ! ଦେବତି ଏଇନେ—

ବିମଳା—ଦେ ନା ମ, ସରିଯିବ; ଭାଇନାଙ୍କ ପାଇଁ ଟିକଏ ରଖିଥା –

ରୋହିଣୀ—ବିମଳ ! ଭାରି ଦୁଷ୍ଟ ତୁ ହେଲୁଣି ଏବେ (ଗାଲ ଟିପିଧରି )

ବିମଳା—ହଁ ମଁ, ଭାଇନା ପୁରସ୍ତମରୁ ଅଇଲେ ଯେ କେତେ କଅଣ ଭଲ ଭଲ ରକମ ଆଣିଥିବେ, ସବୁତକ ତାହାଙ୍କ ପେଟରେ ପକେଇଲୁ ? ଏଇଥିରେ ମୁଁ ହେଲ ଦୁଷ୍ଟ, ମହାରଦ କାଇଁ ଲୋ ?

ରୋହିଣୀ—ଘରକୁ ଅଇଲେ ସିନା – ଆ ।

ବିମଳା—ଆଲୋ, ସରଯୁ ନାନୀ ଆସିବ ବୋଲ କହୁଥିଲୁ, କେତେ ଘଡିମାଜ ହଉଥାଏ ମ ସେ, ଆସି ନାଇଁ ତ ଏତେବେଳଯାଏ ।

ରୋହିଣୀ—(ବୁଲିଁ ନେପଥ୍ୟକୁ) ହେଇଟି ଲୋ ମା, ତୁଣ୍ଡରୁ କଥା ସରିନାଇଁ ଆସିଲାଣି ଇଏ ।

ବିମଳା—ଏତେ ମଠ କଅଣ କଲୁ ମ ?

ସରଯୁ—ବାଟରେ ହାଟ ବସିଚ ଟି ।

ବିମଳା—କ ହାଟ ଲୋ ?

ସରଯୁ—ଏଇ ଆମ ଜୟୀ ଭାଇନା କଥା, ସତେ ସେ ଘର କରିବ, ବୋହୂ ଆଣିବ, କାହା ମନରେ ଏକଥା ଥିଲା ?

ରୋହିଣୀ—ବୋହୂଟି ଆଣିଲାଣି ଏ କଥାଟି ସତ, ଘର କାଇଁ ? ସେଇ କଥାଟି ମିଛ ।

ବିମଳା—ଆଲୋ ! ନ ଥିଲେ ଫେର୍ କରିବେ ନାଁ, ଆଉ କଅଣ, ବୋହୂକୁ ନେଇ ସବୁଦିନେ ତମରି ଘରେ ଥିବେ ?

ସରଯୁ—ଆଲୋ, ବୋହୂଟି କେମିତି ? ସୁନ୍ଦର ନାଁ ?

ରୋହିଣୀ—ନାହିଁ ନ ଥିଲାର ବୋହୂ । ଜଗନ୍ନାଥ ପରା ସପନେଇ କରି ଦେଇଛନ୍ତି । ସୁନା ଫୁଲଟିଏ ସତେ !

ସରଯୂ—ହେଲେ ଯେ ଗାଆଁ କଥା ଆଉ କହନା, କଏ କହୁଛ ଅଜାତ, କଏ କହୁଛ ଜୟୀ ଭାଇନା ଏତେଦିନକେ କୋଉଠାଏ କାହାକୁ ଘିନ ପଳାଇ ଆସିଛି । କଅଣ ଶୁଣିବ ?

ବିମଳା ବୋଧ୍‌ହୁଏ ତମ ଘରର ପରି ! ଦେଖନ୍ତେ ନାହିଁ ଟିକଏ ?

ରୋହିଣୀ—ଗୁଲ୍‌ନୁ । ମୁଁ ତାକୁ ଟିପେ ଦାଣ୍ଡକୁମ୍ଭକୁ ଗୁଡ଼ ଦଉନାହିଁ । ଏ ଗାଆଁ କଥା ତ ଜାଣୁ । ତ ରପରି ବୋଧ୍ ପିଲାଟାକୁ—

ସରଯୂ—ଗୁଲ, ଗୁଲ, ଜାତି ହଉ କ ଅଜାତ ହଉ । ଜୟୀ ଭାଇନା ଆଗେ ଘର କଲ ବୋଲ ।

ବିମଳା— (ହସି) ମୋର ତ ଭାଉଜ ହବ ଲୋ ସିଏ !

ସରଯୂ—କେବକୁ ଆଉ ଏଇଟାର ବୁଦ୍ଧି ହବ ମ ! ଜୟୀ ଭାଇନା ପରି ତୋ ଭାଇନା ହବ ଲୋ !

ବିମଳା—ହଁ ମ, ସେଇ କଥା—ଆଲୋ ଭାଉଜ ! ସେ ପରି ଦକ୍ଷିଣିଆଣୀ ଲୋ ! ସେଇମିତି ଲୁଗାପଟା ଗହଣା ଗାଣ୍ଠି ପିନ୍ଧିଥିବ ତ ?

ରୋହିଣୀ—ମଲ, ତାଙ୍କ ଦେଶର ବେଶ ଯାହା । କହିଚ ପରି,— ଦେଶକେ ଫାଙ୍କ ନଈକେ ବାଙ୍କ ।

ସରଯୂ—ଦକ୍ଷିଣିଆଁ ବାହୁଣ୍ଟି ସିଏ । ମଲ ଯା, ମୋର ପିଇସୀ ଏବେ ତା ଶାଶୁଘରକୁ ଯାଇ, ଫେରି, ଆମ ଘରକୁ ଆସିଲ ବେଳେ ତାଙ୍କ ସେଠା ଦକ୍ଷିଣୀ ଶାଢ଼ୀ, ଦକ୍ଷିଣୀ ଗହଣା ପିନ୍ଧିକରି ଆସିଥିଲ । ଭାକୁ ତେବେ ତ ଅଜାତ ବୋଲି କହିବା । ଏଇଥିକି ଏବେ କହୁଛନ୍ତି ଜୟୀ ଭାଇନା ଅଜାତ ହୋଇଗଲ ! ଆମ ଏ ଗାଆଁ ଖଣ୍ଡି ସିନା ସାନ— ଲୋକଙ୍କ ତୁଣ୍ଡ ବଡ଼ ।

ରୋହିଣୀ—କଏ ମୁଁ, କଏ ସେ ସେଇଟା କହୁଛି ଯେ ! ଏତେ ଜାତିଆ ଟେ ?

ସରଯୂ—ଏଇ ମ, ରାମ ମହାପାତ୍ର ପୁଅ ଶାମିଆ—

ବିମଳା—ହଁ, ସେ କାହିଁକି ନ ଜାଣିବ ? ବେଶି ଜାଣିଥାଏ ନାଁ ?

ରୋହିଣୀ—ବୋହୂର ବାପ, ମାଆ, ସମସ୍ତେ ଅଛନ୍ତି ପରା ! ବାହାଘର ବିଧି ସବୁ ଏଇଠି ହେବନାଁ ?

ସରଯୂ—ସତେ ଏବେ ! ସେ ସଭିଏଁ ଫେର୍ କୋଉଠି ଅଛନ୍ତି ?

ରୋହିଣୀ—ହିନ୍ଦୁର ମାଆ ତ ଏଇଠି ଆମ ଘରେ । ଖଣ୍ଡିଏ କୁଡ଼ିଆ ବାନ୍ଧିଲେ ତ, ଫେର ।

ବିମଳା—ହଁ, ରହନ୍ତୁ କେଇ ଦିନ ଏବେ ଏଇଠି ।

ରୋହିଣୀ—ଆଉ ତୋ ଭାଇନାଙ୍କୁ ସାଙ୍ଗରେ ନେଇ ଜୟୀ ଯାଇଛନ୍ତି ପିପିଲି—କୋଉ ସକାଳୁ ଗଲେଣି ଯେ—

ସରଯୂ—ପିପିଲି ବଜାର ବାଟ କେତେ ଯେ ! ସାଇଁକଲ ଆସିଯିବେ । ତୁ ରନ୍ଧାବଢ଼ା ସାରିଚୁଟି ?

ରୋହିଣୀ—କୋଉଠି ଆଉ ? କଣ୍ଟା ସଜିବାକୁ ନାହିଁ । ବୋହୂଟି ପୁଣି ଏତେ ଭଲ ଯେ, ମୋଠୁଁ ଚଟୁ ଖଣ୍ଡିକା ଛଡ଼େଇ ନେଇ, ରନ୍ଧାଶାଳରେ ।

ବିମଳା—ସତେ କି ମ ? ଏତେ ଗୁଣ ?

ସରଯୂ—ଚୁପ୍, ଚୁପ୍, ତାକୁ ଆଜି ଖଟାନା । ତୁ ନିଜେ ରନ୍ଧାବଢ଼ା କର । ଯେତେହେଲେ ଆମ କୁଣିଆଁଟି ସେ ।

ବିମଳା—ମଲା, ଖାଉଟ । ନୂଆ ଭାଇଜ ହାତରୁ ଶାଗ ଖରଡ଼ା ଟିକିଏ ହେଲେ ପାଟିରେ ବାଜିବ ତ । ଏ ଠାକୁରାଣୀ ତ ସବୁବେଳ ପୁରସ୍ତମ ରଙ୍କମ ଭୁଣ୍ଡିରେ ପକାଇ ଦେଇଛି, ମୁଁ ଆସିଲା ବେଳକୁ ଘର ମାଟି ଗୋଦର ଖୁନ୍ଦୁଥିଲା ଲୋ ସର ନାନି !

ସର—ହଁ, ତେବେ ତ ଖୁନ୍ଦୁଥିବ, ଚୁପ ମ ବୋହୂ ।

ବିମଳା—ସତ ଲୋ, ସାଣ ଅଛୁ । (ହସିଲା)
ରୋହିଣୀ—ମଲୁନାଇଁ ଲୋ ଗ୍ରେପଗା ! ସେ ଠୋକା ଖଣ୍ଡକ ତ ଖାଲି
ଅମରମତା ହଉଚ ! ( ଗାଲରୋଡ଼ ଦେଲା) ।

---

## ଦ୍ୱିତୀୟ ଦୃଶ୍ୟ

( କେନ୍ଦୁଲି ଗ୍ରାମ )

(ଜୟଦେବଙ୍କ କୁଟୀର ସମ୍ମୁଖର ଆମ୍ବତୋଟା—ଆଗରେ ଖଣ୍ଡିଏ ବ୍ୟାସାସନ । ଜୟଦେବ ବସିଥିଲେ, ପାଖରେ ଲେଖନ--ଜୟଦେବ ପରାଶରଙ୍କୁ ପୋଥି ବଢ଼ାଇ ଦେଲେ । )

ଜୟଦେବ—ପରାଶର !
ପରାଶର—( ପୋଥି ଧରି ପଢ଼ିଲେ )

ମେଘୈର୍ମେଦୁରମମ୍ବରଂ ବନଭୁବଃ ଶ୍ୟାମାସ୍ତମାଳଦ୍ରୁମୈ—
ର୍ନକ୍ତଂ ଭୀରୁରୟଂ ତ୍ୱମେବ ତଦିମଂ ରାଧେ ଗୃହଂ ପ୍ରାପୟ ।
ଇତ୍ଥଂ ନନ୍ଦନିଦେଶତଶ୍ଚଳିତୟୋଃ ପ୍ରତ୍ୟଧ୍ୱ କୁଞ୍ଜଦ୍ରୁମଂ
ରାଧାମାଧବୟୋର୍ଜୟନ୍ତି ଯମୁନାକୂଳେ ରହଃ କେଳୟଃ ।

(ପାଠକରି) ସୁନ୍ଦର ! ଜଗବନ୍ଧୁଙ୍କର ଅନୁଗ୍ରହ ଜୟଦେବ ! ଲେଖମାରୁ ଯେମିତି ଅମୃତ ଝରୁଛି, ଜଗନ୍ନାଥଙ୍କ ଇଚ୍ଛାରୁ ତମ ମନୋବାଞ୍ଛା ସଫଳ ହେଉ ।

ଜୟଦେବ—ଏଇ ତ ମାତ୍ର ଆରମ୍ଭ । ସତେ ଏ ପୋଥି ଶେଷହେବ ! – ପୁଣି ଥରେ ପୁରୀ ଯାଇ ଶ୍ରୀମନ୍ ନୀଳାଦ୍ରୀଚନ୍ଦ୍ରଙ୍କର ଚରଣରେ ନିବେଦନ କରିବ । ଏ ସୌଭାଗ୍ୟ –

ପରାଶର — ସନ୍ଦେହ କରନାହିଁ କବି ! ପ୍ରଭୁ ତମର ଇଚ୍ଛା ପୂରଣ କରିବେ ! କି ସୁନ୍ଦର ରଚନା —
( ମେଘୈର୍ମେଦୁର ମମ୍ବରଂ ଇତ୍ୟାଦି ପୁଣି ପଢ଼ୁଥିଲେ )

ଜୟ — ପରାଶର ! ଛନ୍ଦଟି ଶାର୍ଦ୍ଦୂଳ ବିକ୍ରୀଡ଼ିତ । ଯତି ରଖି ଥରେ ପଢ଼, ତୁମର ଅପୂର୍ବ କଣ୍ଠର ସ୍ୱର ସଂଯୋଗରେ ଜୟଦେବର ରଚନା ସଞ୍ଜୀବିତ ହେଉ ।

ପରା—କବିର ଆଦେଶ ଶିରୋଧାର୍ଯ୍ୟ । ( ହସି ହସି କହିଲେ )

ଜୟ — ଆଦେଶ ନୁହଁ ବନ୍ଧୁ ! ଗାୟକପ୍ରବର, ଏ ମୋର ସନିର୍ବନ୍ଧ ଅନୁରୋଧ ସିନା !

ପରା — ନାଁ, ନାଁ, ପରମ ସୌଭାଗ୍ୟ ମୋର, କବି ! ତମର ଏ ଅମୃତ ରଚନା ପ୍ରଥମେ ମୋର କଣ୍ଠରେ ରୂପ ପାଇବ । ଜୟ-ଦେବଙ୍କ କବିତ୍ୱ ମୂଳରୁ, ଶ୍ରୀଗୀତଗୋବିନ୍ଦ ରଚନା ପ୍ରାରମ୍ଭରୁ, ପରାଶର ପ୍ରଥମ ସୁଯୋଗ ପାଇଛି ତାର ସଦ୍‌ବ୍ୟବହାର କରିବାକୁ; କିନ୍ତୁ କବି ! ଭ୍ରମପ୍ରମାଦ ତୁମେ ମାର୍ଜନା କରିବ । ( ସ୍ୱର ସଂଯୋଗରେ ଗାଇଲେ, ଜୟଦେବ ଆଖି ମୁଦି ଶ୍ଳୋକ ଶୁଣିବାକୁ ଲାଗିଲେ । ମଝେ ମଝେ ଦେହ ତାଙ୍କର ଶିହରି ଉଠିଲା, ସହସା ବସନ୍ତର ଆବିର୍ଭାବ ହେଲାପରି ଲାଗିଲା, ଅଦୂରବର୍ତ୍ତୀ ଆମ୍ରକୋଠାର ଗଣ୍ଡିମୂଳେ ଦେଖାଦେଲେ ଶ୍ରୀକୃଷ୍ଣ)

ପରା—
ବାଗ୍‌ଦେବତା ଚରିତ ଚିତ୍ରିତ ଚିତ୍ତ ସଦ୍ମା ।
ପଦ୍ମାବତୀ ଚରଣଚାରଣ ଚକ୍ରବର୍ତ୍ତୀ
ଶ୍ରୀ ବାସୁଦେବ ରତିକେଳିକଥା ସମେତ—
ମେତଂ କରୋତି ଜୟଦେବ କବିଃ ପ୍ରବନ୍ଧଃ ।

ଜୟ—(ବିହ୍ୱଳଭାବେ) ପରାଶର ! ପରାଶର ! (ଉଠି) କିଛି ଅନୁଭବ କରୁଛ ? (ଶ୍ରୀକୃଷ୍ଣ ଅନ୍ତର୍ଦ୍ଧାନ ହେଲେ) କିଛି ଅନୁଭବ କଲ ?

ପରାଶର—ହଁ କବି ! ବସନ୍ତର ଗୋଟିଏ ଚକ୍‌କଣ ପରଶ ପରି, ଏଇ ତୁମର ଲେଖନୀମୁଖରୁ ଅମୃତ ବର୍ଷଣ । ଏକା ମୁଁ ନୁହେଁ । ଦେଖ, ଦେଖ, ତରୁଲତା ମଧ୍ୟ ସେ ସୁଖରୁ ବଞ୍ଚିତ ନୁହନ୍ତି ।

ଜୟ—ନା, ନା, ପରାଶର ! ଏ କେବଳ ତୁମର କଣ୍ଠସ୍ୱର ।

ପରାଶର—ଅସମ୍ଭବ, ଅସମ୍ଭବ କବି ! ଏଇ ବଣର ତରୁଲତା ତ ମୋ କଣ୍ଠର ଆବାଲ୍ୟ ପରିଚିତ । କଣ୍ଠର ମହତ୍ତ୍ୱ ନୁହେଁ କବି ! ଭୁଲ ବୁଝୁଛ, ତୁମର ଭ୍ରମ ।

ଜୟ—କିନ୍ତୁ, କିନ୍ତୁ, ପଦ୍ମଗନ୍ଧ ! ନୂପୁର ! ଶୁଭୁନାହିଁ ତୁମକୁ ? ଯେମିତି ଏଇ ବନ ଭିତରୁ ଆସି, ସେଇ, ସେଇଠାରେ ତୁମର କଣ୍ଠସ୍ୱର ସହିତ ମିଶିଗଲା,—ଲୀନ ହୋଇଗଲା, ଶୁଣିନାହଁ ତୁମେ ?

ପରା—ନୂପୁର ! ଅସମ୍ଭବ ! ନୂପୁର ଶବ୍ଦ ?

ଜୟ—ହଁ, ହଁ, ପରାଶର ! ନୂପୁର ଶବ୍ଦ । ମୋତେ ଅବିଶ୍ୱାସ କରୁଛ ତୁମେ ? ଶୁଣିଛି ମୁଁ ଏଇ କାନରେ ; ଠିକ୍ ଶୁଣିଛି ॥

ପରାଶର—କବି ! ଏ ତୁମର ହୁଏତ ଭ୍ରମ ! ଉନ୍ମାଦନା ।

ଜୟ—ନା, ନା, ପରାଶର ! ଆଉ, ଦେଖ, ଏଇ ନିକଟରେ । ରଖ, ଗୀତ ଗୋବିନ୍ଦ ରଖ । ଆସ ଦେଖ । ଏତେ ଶୀଘ୍ର ଲୁଚିପାରି ପାରି ନଥିବ ।

ପରା—( ପୋଥି ରଖି ) କିନ୍ତୁ କବି ! ମୁଁ ତ କାହିଁ—

ଜୟ—ଆଃ, ଆସନା, ଚାଲିଯାଇପାରେ କୁଆଡ଼େ, ବେଗେ ବେଗେ ଆସ । ମୁଁ ସ୍ପଷ୍ଟ ଶୁଣିଛି । ଅବିଶ୍ୱାସ କରନାହିଁ । ପରାଶର ! ମୁଁ ଠିକ୍ ଶୁଣିଛୁ—ଏଇ, ଏଇ—

ଗୀତ

ଏଇ, କୁଞ୍ଜଲତାର ତଳେ,
ନୂପୁର ଚରଣ ଚଳେ
ରୁମୁଝୁମୁ ବାଜେ ସେ ଯେ ରୁମୁଝୁମୁ ଛଳେ ॥
ଦରଦର ବିକଶିତ ମଲ୍ଲୀ କୁସୁମ ସଙ୍ଗେ ଘ୍ରାଣ ସୁଗନ୍ଧ କି ଢାଳେ,
ଗୁଞ୍ଜି ଗୁଞ୍ଜି ମଧୁକର କେଳି ରଚେ କି, ମନ୍ଦ ମଳୟ ଢାଳେ ଢାଳେ,
ଖେଳେ କି ସେ ବନମାଳୀ ଉଚ୍ଚ ତରୁ ମୂଳେ ॥
( ଗାଇ, ଗାଇ, ବିହ୍ୱଳ ଭାବେ ଢଳିଗଲେ )

ପଦ୍ମା—( ଧୀରେ ଧୀରେ ଆସି ପୋଥିଟି ଉଠାଇ ପଢ଼ିଲେ )
"ବସନ୍ତେ ବାସନ୍ତୀ କୁସୁମସୁକୁମାରୈରବୟବୈ—
ର୍ଭ୍ରମନ୍ତୀ କାନ୍ତାରେ ବହୁବିହିତ କୃଷ୍ଣାନୁସରଣାମ୍
ଅମନ୍ଦଂ କନ୍ଦର୍ପଜ୍ୱରଜନିତ ଚିନ୍ତାକୁଳତୟା,
ବଳଦ୍ବାଧାଂ ରାଧାଂ ସରସମିଦ ମୂଚେ ସହଚରୀ । ୨୭ ।
( ପୋଥି ଦେଖି ବସିଲେ )

କମଳା—(ଆସି, ଅର୍ଦ୍ଧାନ୍ତରାଳରୁ) ସେଇଠୁ ? ତୁମ ହେଇଗଲୁ ଯେ ନୂଆ ଭଉଜ !

ପଦ୍ମା—( ହଠାତ୍ ପୋଥି ବାନ୍ଧି ବସି ) ଏଡ଼େ ଦୁଷ୍ଟ !

କମଳା—( ପୋଥି ବନ୍ଧାରେ ବାଧାଦେଇ ) ଉଁ, ହୁଁ, ହୁଁ, । ତୁଆଁ କରୁଥାଏ,-ତୁଇଁ ଖାଉଥାଏ, ସେ ପିଠା ଭାରି ମିଠା ମ ଭଉଜ ! ତୁଆଁ ତୁଇଁ କଥା ଶୁଣିନାହିଁ ?

ପଦ୍ମା—ଯାଃ ! ଗୁଣ୍ଡି, ପୋଥିଟା ସଜାଡ଼ ଦିଏଁ । ଘରକୁ ଯିବା । କେତେ କାମ ପଡ଼ିଛି ।

କମଳା—ନାହିଁ ମ ଭଉଜ । ସତେ ତୁଆଁ ତୁଇଁ ମଣି ତୁମେ ଦୁହେଁ ମୋର ଭାଇନା ଭଉଜ । ଭାଇନା ଗୀତ ବାନ୍ଧିବେ, ଭଉଜ

ଗାଇବ । କି ସୁନ୍ଦର ତ ଗାଉଚୁ ! ଗା, ଗା, ଆଉ ଗୋଟିଏ, ଗା ।

ପଦ୍ମା — ଏତେ ନିର୍ଲଜ୍ଜା ! ଛି, ମୁଁ କଅଣ ଗାଇ ଜାଣେ ?

ବିମଳା — ହଉ, ପଦେ ଗାଆ ।

ପଦ୍ମା — କି, ତୁ ଗାଉନାହିଁ ।

ବିମଳା — ମଫସଲିଆଣି ଓଡ଼ିଆଣୀ ଝିଅ । ମୁଁ କି ଜାଣେ ଗୀତ ?

ପଦ୍ମା — ଆଉ ମୁଁ ?

ବିମଳା — ତୁ ପରା ଦକ୍ଷିଣିଆଣୀ ? ତମ ଆଡ଼େ ଗୀତର ଚଳନ ଅଛି, ଗା, ମେ ଶୁଣିବି ।

ପଦ୍ମା — ଉଁଃ ! ତୁ ନ ଗାଇଲେ, ମୁଁ ଗାଇବି ନାହିଁ କେବେ ।

ବିମଳା — ଆଚ୍ଛା ତୁ ଆଗ ।

ପଦ୍ମା — ନାହିଁ ତୁ ଆଗ ।

ବିମଳା — ନାହିଁ, ନାହିଁ, ଭାଉଜ ବଡ଼ ନା ନଣନ୍ଦ ବଡ଼ ! ତୁ ଆଗ କି !

ପଦ୍ମା — ଛି ! କି ଲାଜକଥା କହୁନା ! ସେମାନେ ଯେବେ ଆସିବେ ।

ବିମଳା — ମୁଁ କହିବି ଭାଇନା ! ମଣିଷ ନୁହଁ, କୋଇଲି ଗାଉଥିଲା ।

ପଦ୍ମା — ଦର୍କାର ନାହିଁ । ତତେ ଫେରି କିଏ ପାରିବ ? ମୁଁ ଗାଉଛି ପଛେ, ତୁ ଠିଆ ହେଇ ଦେଖ, କିଏ କୁଆଡ଼ୁ ଆସିବ, ବାକି ତୁ ମୋ ପଛେ ପଛେ ଗାଇବୁ । ନହେଲେ—

ବିମଳା — ଆଚ୍ଛା ହଉ ତୁ ଆଗେ ଗା, ସେଇଠଉ —

ପଦ୍ମା — ( ପୋଥି ଧରି )

(ଗୀତ)

ପଦ୍ମା — ଲଳିତ ଲବଙ୍ଗଲତା ପରିଶୀଳନ କୋମଳ ମଳୟ ସମୀରେ,

ମଧୁକରନିକର କରମ୍ବିତ କୋକିଳ
କୂଜିତ କୁଞ୍ଜକୁଟୀରେ,
ବିହରତି ହରିରିହ ସରସ ବସନ୍ତେ,
ନୃତ୍ୟନ୍ତି ଯୁବତି ଜନେନସମଂ ସଖି ! ବିରହି–
ଜନସ୍ୟ ଦୁରନ୍ତେ । ୧ ।

( ଗାଇସାରି ବିମଳାକୁ ପୋଥି ଦେଇ )

ପଦ୍ମା—ଦେ, ଗା ଏଥର ।

ବିମଳା—ମୁଁ ?

ପଦ୍ମା – ନିଶ୍ଚେ ଗାଇବୁ—ଗା (କାନ ଧରି)

ବିମଳା—(ଛଡ଼ାଇ) ଓଃ, କାଟୁଛି, କାଟୁଛି । ଗାଇବି ଗାଇବି, ଛାଡ଼ ।

ପଦ୍ମା—ଗା ( ପାଖକୁ ନେଇଗଲେ )

ବିମଳା – (ଗାଇଲା) ଉନ୍ମଦ ମଦନ ମନୋରଥ ପଥିକ –
ବଧୂଜନଜନିତ ବିଳାପେ,
ଅଳିକୁଳ ସଙ୍କୁଳ କୁସୁମ ସମୂହ ନିରାକୁଳ
ବକୁଳ କଳାପେ ॥

ପଦ୍ମା – (ଗାଇଲା) ମୃଗମଦସୌରଭରଭସବଶଂବଦ
ନବଦଳ ମାଳ ତମାଳେ,
ଯୁବଜନ-ହୃଦୟ-ବିଦାରଣ-ମନସିଜ-
ନଖରୁଚି-କିଂଶୁକ ଜାଲେ ॥
(ଦୁହେଁ) ମଦନ-ମହୀପତି-କନକ-ଦଣ୍ଡରୁଚି-
କେଶର-କୁସୁମ-ବିକାଶେ,
ମିଳିତ-ଶିଳୀମୁଖ-ପାଟଳିପଟଳ-କୃତ ସ୍ମର-
ତୂଣ-ବିଳାସେ ॥

ବିମଳା—ପୁଡ଼ା ଲେଉଟାଇ ଆଉ ଫାଳ ଗା—

ପଦ୍ମା—( ପୁଡ଼ା ଲେଉଟାଇ ) ଆଉ ନାହିଁ । ସେତିକି ଲେଖା ହୋଇଚି ।

ବିମଳା—ସତେ ? ଦେଖି । ଆଲୋ ହିଁ ତ ! ଆଉ ତ ନାହିଁ । କି ପୋଥି ଇଏ ? ( ଉପର ଦେଖି ) ଶ୍ରୀ ଗୀତଗୋବିନ୍ଦ । କେଡ଼େ ସରଳିଆ ଲେଖା ମ ! ଆମେ ତ ମାଇକିନିଆ, ଟିକିଏ ଟିକିଏ ହେଲେ ବୁଝି ପାରୁଚେଁ । ଭାରି ସରଳ ।

ପଦ୍ମା—କିନ୍ତୁ ଭାଇନା ଟି ଚୋର—

ନେପଥ୍ୟେ—ପଦ୍ମା ! ପଦ୍ମା !

ପଦ୍ମା—(ଚମକି) ହେଇ ଆସିଲେଣି ଘରକୁ ସବୁ ।

ବିମଳା—ହଁ ମ, ସବୁ ତ ଚୋର ସେଇ, ମୁଁ ଜାଣେ ସେ କଥା ଯେ !

ପଦ୍ମା—ଚୁପ୍ (ଗାଲ ଚୋଭିଦେଲେ)

ବିମଳା—ଭାଇନା ! ଭାଉଜ ତମ ଗୀତଗୋବିନ୍ଦ ( ପଦ୍ମାକୁ ) କହିଦେବି ତ, କହିଦେବି ତ ଗାଉଥିଲ ବୋଲି—

ପଦ୍ମା—ଛିଃ ଛି, ସୁନା ନଣନ୍ଦଟି ପରା !

ବିମଳା—କହିଦେବି ତ—(ହସିଲା)

ପଦ୍ମା—ସେମିତି ହେଲେ (ମୁହଁ ଚିପି ଧରିଲେ)

ବିମଳା—ନାହିଁ, ନାହିଁ, ପୋଥି ସଜାଡ଼ି ଦେଇ ଯାଉଚି ।

(ବଢ଼ ପାଟିରେ)

ପଦ୍ମା—ଭୁଲ୍ ଭୁଲ୍ !



## ତୃତୀୟ ଦୃଶ୍ୟ

( କେନ୍ଦ୍ରୁଲି ଗାଆଁ ଦାଣ୍ଡ, ଦୁଇ ଜଣ ଦୁଷ୍ଟ ଗ୍ରାମବାସୀ )

ରଥିଆ – ଦେଖିଲୁ ?

ପୁରିଆ—ଆଃ, ମାଙ୍କଡ଼ ବେକରେ ମୋତିହାର ପରି ଜଯ୍ଯାଙ୍କୁ କ ସ୍ତ୍ରୈ ରତ୍ନ !

ରଥିଆ—ଦେଖ୍, ତରତର ହ ନାଁ । କମଳୀକ ହାତ କରିବାକୁ ହବ । ତେବେ ଯାଇ—କମଳୀ ଏଇବାଟେ ଫେରିବ ।

ପୁରିଆ– ଆସୁଥିବ ମ ସେ ।

ରଥିଆ—ଆରେ, ହବ ଛପା ଦେ ରେ । ଅଣଆଉଆକୁ ଗୃଲ ।

ପୁରିଆ—ଆରେ, ତା କଥା ମୋତେ ଲଗେ, ତୁ ବେପରୁଆ ଥା । ସେ ଯୋଉ ଛଉଦା ଟୋକା !

ରଥିଆ—ଆମ ଅଜା କହିଲା ପରି ଯେମିତି ଛେଉକ ବଲେଇ ତ ! ତାଙ୍କୁ ପାଇଲେ—ପଦ୍ମା ଆମ ହାତମୁଠାରେ ବୋଲ । ଆରେ, ସେଥିକ ପାଞ୍ଚ ପଚଶି ପଡ଼ୁ । ଛଲେ, ବଲେ କଉଶଳେ – ଯେମିତି ହଉ ଥରେ କେମିତି ପଦ୍ମା ସାଙ୍ଗରେ ଖାଲି ନବେଳାରେ ଦେଖା ହେଲେ—

ପୁରିଆ—ହେଲେ, ସେଇଠୁ ?

ରଥିଆ – ସେଇଠୁ ? ଯ୍ଯା ପାଲରୁ ବରତ ଯିବ ? ଏମିତି ସଞ୍ଚ ତ ମୁଁ ଖଣ୍ଡ ମଣ୍ଡଳରେ ଦେଖି ନାହିଁ । ଥରେ ଖାଲି ଷ୍ଟୁରିଆଖି ହବାପାଏଁ ।

ପୁରିଆ – ସେ କଅଣ ସହଜ ? ଏକୁଟିଆରେ ପଦ୍ମା କୋଉଠିକ ନ ଯାଏ । ନଆଁ ପଛେ ପଛେ ବାଆପଣ ସବୁବେଳେ ସେ

ବିମଳା ନାଇଁ ତ ଦେବ୍ଦାଶୀ ତା ସାଙ୍ଗେ ସାଙ୍ଗେ ଅଛନ୍ତି ।
ଦେବ୍ଦାଶୀଟା—

ରଥିଆ—ବୋପା ଲୋ ! ରଣଚଣ୍ଡୀ ସେ ଖଣ୍ଡ ! ତା କଥା କହ ନାଁ ।
ତାକୁ ଦୂରରୁ ଦଣ୍ଡବତ । ଜଣା ଡାହାଣୀ, ସଦ୍ୟ ଜୀଅନ୍ତା
ଖାଇଯିବ । ହାଁ, ବିମଳା କଥା କହିଲ, ସେଥିକ ବଡ଼ପ ପାଏ ।

ପୂରଅ  ଆଚ୍ଛା, କୋଉଥିରେ ତାର ଶରଧା ଥିବ କହନା ?

ରଥିଆ—କାହାର ? ବିମଳାର ?

ପୂରଅ—ହ ।

ରଥିଆ—ତାଆର (ଭବି) ଆଜକାଲ ନୂଆ ଚଳନ ହେଇଚ, ଏଇ,
ଏଇମ, ନାକଫୁଲ୍ଲ୍କ ।

ପୂରଅ—ଧେତ୍, ପସନ୍ଦ ହବ ନାହିଁ ।

ରଥିଆ—ନାଇ ତ ଚଉଁସାଭୁଣ୍ଡି, ପିହାଣିଆ ।

ପୂରଅ—ଉଁ ହୁଁ ।

ରଥିଆ—ଆରେ ସୁନାର ମ, ନୋଇଲେ ଚନ୍ଦ୍ରହ୍ମୀ ।

ପୂରଅ—ହାଁ, ଠିକ୍ ଚନ୍ଦ୍ରହ୍ମୀ, ତା ସାଙ୍ଗକୁ ଆମ ଏଇ ଗାଆଁ
ବୁଢୀ ଷାଠିକଆ ସ୍ତାର ଖଣ୍ଡି ବାରହାତ ଧୂପଛୁପା କେନ୍ଦ୍ରୁଳ
କପ୍ତା, କୁମ୍ଭ କାଙ୍ଗୁଳ ଥାଇ ।

ରଥିଆ—( ଠାର ) ଏଇ, ଏଇ, ଏଇ !

ପୂରଅ—ଆଃ, ବୁଝିଲୁ, ଭଗ୍ୟ ସଳଖ, ଦେଖ ! ପଠ ଘୁଡ଼ିବୁ ନାହିଁ ।
କହିବୁ ।

ରଥିଆ—ତୁ ଆଗ, ନାଁ ମୁଁ ଆଗ ?

ପୂରଅ—ତୁ ଆଗ କହନାଁ, ଦଖାନବା ବେଳକୁ ତ ମୁଁ ଅଛି ।

ରଥିଆ—ନାଇଁ ଭାଇ, ତାର ବାଗସବୁ ତୋତେ ଜଣା, ତୁ ଆଗେ
କହ ।

ପୂଣିଆ— ନାଇଁ ନାଇଁ, ଆଗେ ତୁ । କଥାଟା ଖଞ୍ଜରେ ପକା ।
( ବିମଳୀ ହେଇ ବାଟେ ପାଣି ଧରି ଗ୍ଲେଗଲା )

ରଥିଆ—(ପୂଣିଆକୁ କେଞ୍ଚି, କହ ବୋଲି ଠାରିଲା)

ପୂଣିଆ – (ଅସ୍ପଷ୍ଟ କଥାରେ କହିଲା) ତୁ କହନା ।
(ଏଇ ଅବସରରେ ବିମଳୀ ଦୂରକୁ ଗଲା)

ରଥିଆ – (ବିମଳୀକୁ) ଟିକଏ କାମ ଥିଲା ଯେ—

ବିମଳୀ—(ଫେରି ଗୁହିଁ) କାହା ପାଖେ ? ମୋ ପାଖେ ? କଅଣ ?

ପୂଣିଆ—ନାଇଁ (ଜିଭ ମାଡ଼ିକି ତୁଣ) ମୁଁ ନୁହଁ, ମୋର ନୁହେଁ,
(ରଥିଆକୁ ଠାରି) ସେ – ସେ ।

ବିମଳୀ— କଅଣ, କହନ୍ତୁ ?

ପୂଣିଆ—ତୁ ଡାକିଲୁ ନାଁ ? (ରଥିଆକୁ ଗୁହିଁ)

ବିମଳୀ—ପୂଣିଆ, ସେ ଲଗି ମାନଙ୍କୁ ଆଉ କାହାକୁ କହିବୁ, ଏକା
ଖାଉମୁଷାଙ୍କେ ଦିନିକ ଦେଣିଅଁ ଛଡ଼େଇ ଦେଇଛି ! ହା ରେ,
ଜାଣିଛନ୍ତି ? ମୋ ନାଁ ବିମଳୀ ।

ପୂଣିଆ—ମୁଁ ତ କିଛି କହିନାଇଁ ।

ରଥିଆ—ମୁଁ ତ ବି—

ବିମଳୀ—ତୁ ତ—ମୁଁ ତ—ଯା ଯା— (ଚ୍ଲେଗଲା)

ପୂଣିଆ—ଦେଖିଲୁ ?

ରଥିଆ— ଗଡ଼ି ଦେଖିବ କଅଣ. ତୁ ତୁଅଁ ମୁହାଁ ଯୋଉଠିଥିବୁ—

ପୂଣିଆ—ମୁଁ ତୁଅଁ ମୁହାଁ ?

ରଥିଆ – ଆଉ ? ମୁଁ ତ ଡାକିଲି ଦେଖିଲେ । ତୁ କହିଲୁ ନାହିଁ ?
ସେଇ କଥା ତ ମୁଁ ତୋତେ ଆଗରୁ କହୁଛି; ଦେଲୁ ଦେଲୁ
ବେଳ ମୋର ।

ପୂଣିଆ – ଯାଃ, ଗୋଖର ସାପପରି ସେ ଯୋଉ ଫଁ ଫଁ ହଉଛି—

ରଥିଆ – ଆରେ, ସେଇଟା ଶୁଭ କୁଟଳ । ଜଣେ ଜଣେ ଥାଆନ୍ତି, ଆଗରୁ ଟିକଏ ସେମିତି ଫଣା ଟେକନ୍ତି । ବାଙ୍କା, ପନ୍ଥିଲ ଘାଇଡ଼ଙ୍କୁ ଅଡଉଛ ନ ହେଇ ଟିକେ ସନ୍ଧିଗଲେ ହୁଏ ନାଁ ? ତୁ ଗୋଟେ ହେଙ୍ଗୁ ଟେ ।

ପୁରିଆ – ଆଉ, ମୁଁ ତ ହେଙ୍ଗୁ, ତୁ ?

ରଥିଆ – ମୁଁ ? ରହ, ଚନ୍ଦ୍ରଖୁମୀଟେ ଆଉ କସ୍ତା ଖଣ୍ଡେ ହେଇଯାଉ ।

ପୁରିଆ – ଆଚ୍ଛା, ଦେଖିବା ତୋ ଅସ୍ତିରପୁଅ ପଣିଆଁ ଟା !

ରଥିଆ – ହଁ, ଦେଖିବୁ । ତା ଫଣା ଭାଙ୍ଗିଯିବ । ଗଦ ଅଛି, ଜଡ଼ ଅଛି, ନୋଇଲ୍ ବେଳକୁ ଜରମହୁରି ଅଛି ଟି, ଗୁଲ ଗୁଲ । ଆଜ ଯୋଗଟା ତ ଫସକ ଗଲା, ଖାଲ ତୋର ଯୋଗରୁ ।

ପୁରିଆ – ଆଉ କଅଣ ? କହିବୁ ନାହିଁ କାହିଁକ ? ଗୁଲୁନୁ । ଏବେ ଚଉଠୀ ନକ୍ଷତ୍ରକୁଳ ତାକୁ ଦେଖିବୁ ତ, ଗୁଲ ।

ରଥିଆ – ନାଁ, ଆଜ ? କହିଲ ପରା, ଯୋଗ ଖରାପ । ଜନସ ତଆର ହଉ, ଟିକଏ ଗଣି ନଷତ୍ର ଦେଖେଇ, କାଣ୍ଡେ ନାଚୁଛ ଯେ –

ପୁରିଆ – ତୁ କାଣ୍ଡେ ନାଚ, ଦକାଣ୍ଡ ନାଚ ବାବୁ ! ମୋର ଏ ଠିଆନାଲକୁ ଆଜଠୁ ଦଣ୍ଡବତ ।

ରଥିଆ – ଦେଖ ପୁରିଆ, ଭଲ ହବ ନାହିଁ କହୁଛି ।

ପୁରିଆ — ଯାହା ହଉ ଭାଇ । ମୁଁ ମାନକଙ୍କର ଅଣ୍ଡା । ସେ ଯୋଉ ଚମ ଚମ ହେଇ ଗୁହିଁଲା ।

ରଥିଆ – ଆରେ, ସେ ଚମ ଚମ ବୁହାଣୀ କ ଡରଗଲେ ଆଉ ଚଳିବ ? ଗୁଲ । ମରଦପୁଅ ହେଇ ଏଉଥିକ ଗୁନିଆଁ ? ଏତିକରେ ହଦେଇ ଯାଉଛୁ ? ଗୁଲ (ନେଇଗଲା)

---

# ଚତୁର୍ଥ ଦୃଶ୍ୟ

(କୋକିଲ ଝଙ୍କୃତ ବାସନ୍ତୀ ରଜନୀ । ପୋଥି ଓ ଲେଖନୀ ସହ ଆସୀନ ଜୟଦେବ । ପଦ୍ମା ଅଦୂର ନେପଥ୍ୟରୁ ଗାଇ ଗାଇ ଆସୁଥିଲେ ଗୀତ—

( ଗୀତ )

ଚନ୍ଦନଚର୍ଚ୍ଚିତ ନୀଳକଳେବର ପୀତବସନ ବନମାଳୀ ।
କେଳି ଚଳନ୍ମଣି କୁଣ୍ଡଳମଣ୍ଡିତ ଗଣ୍ଡଯୁଗସ୍ମିତ ଶାଳୀ ॥
ହରିରିହ ମୁଗ୍ଧ ବଧୂନିକରେ
ବିଳାସିନି-ବିଳସତି-କେଳିପରେ ।
ପୀନପୟୋଧର-ଭାରଭରେଣ ହରିଂ ପରିରଭ୍ୟ ସରାଗମ୍
ଗୋପ-ବଧୂରନୁଗାୟତି-କାଚିଦୁଦଞ୍ଚିତ ପଞ୍ଚମ ରାଗମ୍ ।
କାପି-ବିଳାସ-ବିଲୋଳ-ବିଲୋଚନ-ଖେଳନ-ଜନିତ-ମନୋଜମ୍
ଧ୍ୟାୟତି ମୁଗ୍ଧ ବଧୁରଧିକଂ ମଧୁସୂଦନ ବଦନ ସରୋଜମ୍ ।

( ଜୟଦେବଙ୍କ ପାଖରେ ପଦ୍ମା ଗୀତ ବନ୍ଦ କରି ପଚାରିଲେ)

ପଦ୍ମା — ହଁ, ମଥା ଉପରେ ଫାଟି ପଡ଼ୁଛି ପୂର୍ଣ୍ଣଚନ୍ଦ୍ରର ଉଜ୍ଜ୍ୱଳ ହସ । ମୃଦୁଳ ପବନ ଅଜାଡ଼ି ଦେଉଛି ସୁଗନ୍ଧ ବାସରାଶି । ବସନ୍ତର ଏ ଆନନ୍ଦ ପ୍ରକୃତି ଉପଭୋଗ ନ କରି, ଧରି ବସିଲେ କଅଣ ନାଁ—ପୋଥି ଅଉ ଲେଖନୀ ।

ଜୟ—( ଅଳ୍ପ ହସି ) ହୁଁ ।

ପଦ୍ମା ହୁ, ଅର୍ଥାତ୍ ?—

ଜୟ—ଅର୍ଥାତ୍ ପୋଥି ଆଉ ଲେଖନୀ ।

ପଦ୍ମା—ଅର୍ଥାତ୍ ମନେ

ଜୟ— ଅର୍ଥାତ୍ ସରସତୀର ଅର୍ଚ୍ଚନା ।

ପଦ୍ମା—ଅର୍ଥାତ୍ ?

ଜୟ—ଅର୍ଥାତ୍ ସରସତା ଉପଭୋଗ କରିବାକୁ ଦେଲ ନାହିଁ ଯେ—

ପଦ୍ମା—ମୁଁ ?

ଜୟ—ହଁ, ତୁମେ । ବସନ୍ତର ପ୍ରକୃତି ପରି ଫୁଟିଥିଲା ତୁମର ଗୀତର ଝଙ୍କାର ଭିତରେ ? ବସି ବସି ବଡ଼ ଉପଭୋଗ କରୁଥିଲି । ତୁମେ ନୀରବ—ଆଜ ମୁଁ ନୀରସ ।

ପଦ୍ମା—(ହସି) ଓଃ, ତେବେ ହାଉ ହାଉ କରି ପାଟି କଲେ ଯାଇ ତୁମର ସରସତା ଫୁଟିବ ? ଜାଣି ନ ଥିଲି ତ ! ବେଶ୍ ଏଣିକି କରିବ ।

ଜୟ—ପଦ୍ମା ! ଶତ ଚେଷ୍ଟା କଲେ ମଧ୍ୟ କୋଇଲି କାଆ କାଆ କରିପାରିବ ନାହିଁ ଯେ ! ଗାଅ,

ପଦ୍ମା—କଅଣ ?

ଜୟ—ଯାହା ଗାଉଥିଲ !

ପଦ୍ମା—ଗାଇଲେ ?

ଜୟ  ଗାଅ, ମୁଁ ଲେଖେଁ, ତୁମେ ଯେ ଶକ୍ତି, ସ୍ପନ୍ଦନ ।

ପଦ୍ମା—ଏତେ କଥା ମୁଁ ବୁଝେ ନାହିଁ । ତୁମେ ଆଦେଶ କଲ, ମୁଁ ପାଳିବି, ବାସ୍, ଏତିକି । ( ପୁଣି ଗୀତ ଗାଇଲେ )

( ଗୀତ )

କାପି କପୋଳତଳେ ମିଳିତା ଲପିତୁଂ କିମପିଶ୍ରୁତି ମୂଳେ
ଚାରୁ-ଚୁଚୁମ୍ବ-ନିତମ୍ବବତୀ ଦୟିତଂ ପୁଲକୈରନୁକୂଳେ ।
କେଳିକଳାକୁତୁକେନଚକାଚିଦମୁଂଯମୁନା-ବନକୂଳେ
ମଞ୍ଜୁଳ-ବଞ୍ଜୁଳ-କୁଞ୍ଜଗତଂ ବିଚକର୍ଷକରେଣ ଦୁକୂଳେ । ୫ ।

(ଜୟଦେବ ପଦ୍ମାଙ୍କ ଗୀତ ଶେଷ ହେବା ପରେ ବଡ଼ ଆନନ୍ଦରେ କହିଲେ)

ଜୟ—ବେଶ୍, ଏଥର ଗାଇଲ ଦେଖି ଏଇ ରଚନାଟି (ବଢ଼ାଇ ଦେଲେ ପୋଥି)

ପଦ୍ମା—ରଚନା ! ଏତିକବେଳ ଭିତରେ ଶେଷ ?

ଜୟ—ତୁମେ ଯେ ଶେଷ କଲ—ତୁମର ଗୀତଟି ସତ୍ୱର ଯେ ମୋର ରଚନା ମଧ୍ୟ ଶେଷ ହେବାର କଥା । ଆଜ ଗଅ, ପୁଣି ଲେଖିବ । କହିଲ ପରା ତୁମେ ଶକ୍ତି, ତୁମର ଏ ଗୀତ ଯେ ମୋତେ ଲେଖମା ଧରାଇଛି ପଦ୍ମା ! ଗାଇଲ ଗାଇଲ, ଏଇଟିକ ।

ପଦ୍ମା—ଗାଇବ ? ମୁଁ ? କେମିତି ଗାଇବାକୁ ହବ ଜାଣେ ନାହିଁ ତ !

ଜୟ—ଓ, ସତକଥା । ମୋ ସଙ୍ଗେ ସଙ୍ଗେ ଗାଅ ଦେଖି ।

( ଜୟଦେବ ଗାଇଲେ ପଦ୍ମା କଣ୍ଠ ମିଶାଇଲେ )

＝ଗୀତ＝

ନନ୍ଦତ ଚନ୍ଦନମିନ୍ଦୁକରଣ ମନୁବନ୍ଦତି ଖେଦ ମଧୀରମ୍
ବ୍ୟାଳନିଳୟ ମିଳନେନ ଗରଳମିବ କଳୟତି ମଳୟ-ସମୀରମ୍

ସା ବିରହେ ତବ ଦୀନା
ମାଧବ ମନସିଜ, ବିଶିଖ ଭୟାଦିବ ଭାବନୟା ତ୍ୱୟିଲୀନା ।

( ୨ )

ଅବିରଳ-ନିପତିତ-ମଦନ ସରାଦିବ ଭବଦବନାୟ ବିଶାଳମ୍
ସହୃଦୟ ମର୍ମଣି-ବର୍ମ କରୋତି ସଜଳ ନଳିମୀ-ଦଳଜାଳମ୍

( ୩ )

କୁସୁମ ବିଶିଖ ଶର ତଳ୍ପ ମନଳ୍ପ ବିଳାସ କଳା କମନୀୟମ୍
ବ୍ରତ ମିତ ତବ ପରରମ୍ଭ ସୁଖାୟ କରୋତି କୁସୁମ ଶୟନୀୟମ୍ ।

## ପଞ୍ଚମ ଦୃଶ୍ୟ

( କେନ୍ଦୂଲି ଗାଆଁ ପାଣ୍ଠ )

(କସ୍ତା ଖଣ୍ଡିଏ ଧରି, ଛତା କାଙ୍କରେ ଜାକି ଆସିଛୁ ପୁରିଆ । ବଡ଼ ଛନ ଛନ ହୋଇ ଏଣେ ତେଣେ ଗୃହୁଁଛ । ଯେମିତି ସେ କାହାର ଅପେକ୍ଷାରେ ଖୁବ ଉକ୍କଣ୍ଠିତ ।)

ପୁରିଆ—ରଥିଆ, ଏ ରଥିଆ ! ନାଃ, ସେ କଅଣ ସହଜେ ଆସିବ ? ସେଦିନ ସେମିତି ବିଗାଡ଼ିଲା । ଆଜି ଏବେ କାନେ କାନେ ତାକୁ କହୁଛି—ଆରେ ବଣିଆଁ ଘରୁ ଯେମିତି ପାର ସେମିତି ବେଗେ ଟିକିଏ ରକମଟାକୁ ନେଇକରି ଗାଆଁ ମୁଣ୍ଡ ଗୋହିରିକି ଆ । ସେ କଅଣ ମଣିଷପଣିଆଁ କରିବ ଯେ କୋଉ କାମ ହବ ! ଯାଆନ୍ତୁ ବାହାରି ତା ପାଖକୁ ହେଲେ । ଏଣେ ଯେବେ ବିମଳୀ ବୁଲିଯାଏ ମୁଁ ଯାଇକରି ବାହୁଡ଼ିଲାବେଳକୁ ? ନାଃ, ଏଇଠି ଥାଏଁ, ଯାହା ହବାର ହବ । ଠିକଣା ବେଳକୁ ଆଜି ଯେବେ ନ ଆସିଲୁ, ପିଠିରୁ ଗୁଲି ଉତାରି ଦେବି ତାର ( ଦାନ୍ତ କାମୁଡ଼ି ) ।

( ବିମଳା, ହାତରେ ଫୁଲଡାଲା ନେଇ ବୁଲି ଆସୁଥିଲା ସେଇ ବାଟରେ । ପୁରିଆ ଅଧଦୂରରୁ ତାଙ୍କୁ ଦେଖି ଗାଣ୍ଡିଚଲେ କସ୍ତାକୁ ଲୁଗୁଜ ଲୁଗୁଜ ଲମ୍ବିକି) –

ପୁ:—ଗଲା ତ ! ଗଲା ତ ଧାଗ ବଗିଚ଼ା, ଆଉ କଅଣ ? ଏଇ ତ ଆସିଗଲା ସେ । ରଥିଆର କାଳି ଦେଖାଅଛୁ ? ଜାଣେ ପଗ ଗୋଟେ ମେଡ଼ି ଖନିଆଟେ ସେ । ଉଃ ( ଦାନ୍ତ କାମୁଡ଼ି ) ଆସୁ, ଆସୁ ଆଜି ।

( ବମଳୀ ନିକଟବର୍ତ୍ତିନୀ ହେବାରୁ ଟିକିଏ ପଛେଇ ଗଲା ଓ ବମଳୀ ଅଳ୍ପ ଆଗ ବଢ଼ିଯାଉଛି, ୨।୩ ଥର ଡାକିବ କି ନ ଡାକିବ ଭାବି, ସାହସ କରି ତାକୁ ଡାକିଲା )

ପୁ:—ବମଳୀ।

ବ:—( ଫେରି ଚାହିଁ, ଚାଲିଯିବାକୁ ବସିଲା )

ପୁ:—ବମଳୀ ମ !

ବ:—କାହିଁକି ଡାକୁଛୁ ? ପୁରୁଆ ! ତୋତେ କଣ ଦଇବ ଗ୍ରାସି-ଲାଣି କି ?

ପୁ:—( ଚମକି, ସାହସ ଧରି ) ନାଇଁ ତ—ମୁଁ—

ବ:—କଅଣ ମୁଁ ? ମତେ କଅଣ ଦଶୁ ନାଇଁ ତୁ ବୋଲି ?—ଏଇ ଦିନ ଦିପ୍ରହରଟାରେ ?

ପୁ:—ସେଇଆ ତ।

ବ:—କେଉଁଆ ତ ? ଏଁ ? ( ପାଖକୁ ମିଶି ଆସିଲା )

ପୁ:—ମୁଁ ବୋଇଲିକି ଏତେ ଖରା ?—

ବ:—କାହିଁକି ଯେବେ ଛତାଟା ଧରି ପକାଉନୁ ?

ପୁ:—( ଛତାଟା ବମଳୀ ମଥା ଉପରେ ଫିଟାଇ ଟେକି ) ହଁ, ହଁ ମୁଁ ତ ସେଇଆ କହୁଥିଲି।

ବ:—(ଦୂରକୁ ଘୁଞ୍ଚି ) ଦେଖିବୁ ଏଇନେ ଛତରା। ରଖ, ରଖ ତୋ ଛତା।

ପୁ:—( ଛତା ବନ୍ଦ କରି ) ନାଇଁ, ନାଇଁ ମୁଁ କଅଣ କହୁଥିଲି କି—

ବ:—କଅଣ କହୁଥିଲୁ ?

ପୁ:—ବୋଇଲି ଏତେ ଖରାଟାରେ କଅଣ ପଦ୍ମା ଘରକୁ ଯାଉଛୁ ?

ବ:—ହଁ, ମୁଁ ମୋର ଯୋଉଠିକି ଗଲି, ତୋର କଅଣ ଗଲା ?

ପୁ:—ନାଇଁ ଏ ଖରାଟାରେ—

ବ:—ହଁ ଯେ, ତୋର କଅଣ ଥାଏ ? ତତେ ବାଧୁଛି ?

ପୁ:—(ହସି) ଯା ଆଉ ବାଧନ୍ତା ନାହିଁ ନାଁ ? ପରଙ୍କେ ପର ଠାକ ପାଇଁ ବଥଉଚ—ନହେଲ ବା ତୁ ବାହ୍ମଣ, ମୁଁ ଖଣ୍ଡେଇତ । ତୁ ତ ଫେର ମୋ ସାଇ ଭାଇର—ଆପଣାର ଲୋକ ।

ବ'—ସତେ ? ଆପଣାର ଲୋକ ! ତୁ ମୋର ନାଁ—ମୁଁ ତୋର ମ ? ଏଇ ସୁଆଗ ଦେଖେଇବାକୁ ଡାକୁଥିଲୁ ? ଚାଲ, ଆଜ ଗୋବର୍ଦ୍ଧନ ପଣ୍ଡିତଙ୍କ ପାଖକୁ । ତୁ କେମିତି ରସିକ ହେଇଛୁ ଦେଖୁଛି ମୁଁ । ସେଦିନ ସେମିତି ଚଥିଆକୁ ସଙ୍ଗରେ ଧରି—

ପୁ:—ନାହିଁ ନାହିଁ, ସେଇଥିପାଇଁ ପରା ଆଜ ଚଥିଆକୁ ସାଙ୍ଗରେ ଆଣି ନାହିଁ । ଭଲଲୋକ ମୁହେଁ ସେଇଠା ।

ବ:—ଆଉ ତୁ'ଠା ? ତୁଠା ଭାରି ଭଲଲୋକ, ନାଁ ? ଏଇଥିପାଇଁ ସୁଆଗ ଡାକ—କମଳୀ, କମଳୀ ! ଯା, ଯା'ରେ ତୁଣ୍ଡ । ଦଉଚ ତତେ ଆଜ ।

ପୁ:—ନାହିଁ, ମୁଁ କଅଣ କହୁଥିଲି—ତୁ ଏତେ ବେଗେ ରାଗିଗଲେ ଆଉ କହିବ କେମିତି ?

ବ:—ଆଉ କଅଣ କହିବୁ ?

ପୁ:—କଅଣ କି ? ଏଇ-ଏଇ କସ୍ତା ଖଣ୍ଡିକ—

ବ:—କଅଣ ?

ପୁ:—ପସନ୍ଦ ହଉଚ ?

ବ:—କାହିଁକି ? ମୋ ପସନ୍ଦ ଅପସନ୍ଦରେ ତୋର କଅଣ ଥାଏ ?

ପୁ:—ଏଖଣ୍ଡି ମୋ ପସନ୍ଦରେ ତୋତେ ମାନନ୍ତା ।

ବ:—ଓ, ମୋ ପାଇଁ ଆଣିଚୁ ତେବେ, ଏଇକସ୍ତା ଖଣ୍ଡିକ ।

ପୁ:—ନାଇଁ, ନାଇଁ ଖାଲି କଣ୍ଠା କାହିଁକି ? ହୁଁଃ, ଏତେବେଳେ ହେଲେ ସେ ଆସିଲା ? ଗୋଟାଏ ଚନ୍ଦ୍ରମୁଖୀ ତୋ ପାଇଁ ଗଢ଼େଇଥିଲି ଯେ—ଦଣ୍ଡିଆଁଟି, ଭଲ ଗଢ଼ିଛି । ଅସଲି ଜୟପୁରୀ ମଦ୍ରାଜ, ପଥର ବସା । ତା'ର କଅଣ ଦେଖାଅଛୁ ? ଟିକଏ ଏଠି ରହିବୁ, ମୁଁ ନେଇ ଆସନ୍ତି ହେଲେ ।

ଢ:—ସତେ ? ଏତେ ଶରଧା ତୋର ମୋଠି ?

ପୁ:—ମିଛ କହୁନାହିଁ । ବାପା ରାଣ, ମାଆ ରାଣ, ମୋତେ ବାଡ଼ ଗୋସେଇଁଙ୍କ ରାଣ ଲୋ ! ଦିନ ରାତି ମୁଁ ପରା ଖାଲି ସପନ ଦେଖୁଚି ।

ଢ:—ସପନ ଦେଖୁଚୁ, ନାଁ ?

ପୁ:—ସତେ, ରାଣ ଅଛୁ । ତୋ ଦିହ—

ଢ:—ଛୁଁ ନା, ଥାଉ, ଥାଉ, ମୁଁ ପରା ଦିଅଁଙ୍କ ଫୁଲ ଧରିଛୁ ।

ପୁ:—( ଦୁଃଖ ) ହଉ, ହଉ ।

ଢ:—ହଉ ତେବେ, ତୁ ଚନ୍ଦ୍ରମୁଖୀ ହେଉକା ସଜାଡ଼ି କରି ବସିଥା ଏଇଠି, ମୁଁ ଜୟା ଭାଉଜ ଘରେ ଫୁଲତକ ଦେଇ, ଏଇ ବାଟେ ଆସୁଛି ।

ପୁ:—ଏ ଝଣ୍ଟିକ ନେଇଯା ।

ଢ:—ଏକାଠି ନେଲେ ହବନାହିଁ ?

ପୁ:—ହଁ ହୁଁ, ନ ନେଲେ ମୋ ମନରେ ଭାରି ଦୁଃଖ ହେବ ।

ଢ:—ଆହା ! ତୋର ଦୁଃଖ ହବ ? ମୁଁ ଫେର୍ ସହିବି ? ନାଇଁ, ଯେମିତେ ହେଲେ ଦେ, ଦେ । (ହାତ ବଢ଼ାଇଲା)

ପୁ:—ଆହା ! ବମଲୀ ପଳ ଫେର—(ବଢ଼େଇ ଦେଇ ଓ ବମଳୀ ନେଇଗଲ ) ମୁଁ ଚନ୍ଦ୍ରଷ୍ଟମୀ ଆଣି ଏଇଠି ଅନେଇଁଛି । ଏଁ ?

ବ:—ହଉ, ( ଚାଲିଗଲ । )

ପୂ.—(ଖୁବ୍ ଆନନ୍ଦରେ) ବମଲୀ, ନାଁଲି ନାଚି, ଯା ଯା । ପଦ୍ମା କଥାଟା ଆଉ ଛନେ । ଟିକଏ ବାଗେଇ ଯାଉ, ରଥିଆ ହୁଣ୍ଡା କହୁଛୁ କଅଣ ନାଁ । ଫୁ—ଫୁଁ ଧ୍ୱଉଚ । କରେ, ବମଲୀର ମନଟି ! ପୂରିଆକୁ ଅଜଣା ?

ରଥିଆ—( ଆସି ) ଆସିଲ ରେ ମୂରିଆ ଭାଇ !

ପୂରିଆ—(ଚାପୁଡ଼େ ମାରି) ଶଳା ! ବୋଇଲ ଭାଇ ! ଭାଇ କଅଣ ବେ ? ଏତେ ଉଚ୍ଚୁର ? କହୁଚ ମୁଁ ବେଟେ ଆ—

ରଥିଆ—ସେ ଦେଲେ ତ ! (ଗାଲ ଆଉଁସି ) ଏଇଥି ପାଇଁ ମୋତେ ଏତେ ଚାପଡ଼ା ଟେ—

ପୂରିଆ—ମାଇଲଣିକ, ଶଳାକୁ ତ ମନ ହେଉଚ, ପଣେ କ ଗାଞ୍ଜଣ୍ଡା ଖୋଇନ୍ତ । ( ମିଶିଯାଇ ) ଉଁ, ଘୁର ମଣାକୁ ମାଇଲେ କଅଣ ହବ ? ( କାନ ଧରି ) ଆଉ ଟିକଏ ଆଗରୁ ଯେବେ ଶଳାଟି ମୋର ଆସି ଥାଆନ୍ତୁ, ଦେଖି ଥାଆନ୍ତୁ ରେ ଅନଙ୍ଗ ଲଆ, ସାପ ଗରଜନକୁ ଔଷଧ କଅଣ !

ରଥିଆ—ଓଃ କାଟୁଚ, କାଟୁଚ ।

ପୂରିଆ—କାଟୁଚ କଅଣ ? ଛିଣ୍ଡେଇ ତ ଦେବ ଶଳାର କାନ । ମୋ ଦେହ ଯାହା ଘଟୁଛି ! ଭୁ ଗଧର ପଗ ଟିକ ଟିକ କର ମାଉଁସ ଖାଇଲେ ଦୋଷ ନାଇଁ ରେ ! କସ୍ତା ଖଣ୍ଡେକ ଦେଲ, ଆଉ ଏଇଟା ଦେଇଥିଲେ ଏକା ମାଉକେ ମୋ କାମ ସବୁ ଯାଇ ନ ଥାନ୍ତା ? ପଦ୍ମା କଥା ଆଉ ତାକୁ କହି ପାରିଲ ? ନାଇଁ

ନାଇଁ ! ତୁ ଶଳା ଯା, ଅପଦାର୍ଥିଆଟାଏ ତୁ, ସେ ଧନ ସେମେତେ
ତୁ ଥିବାରୁ – ଯା-ଯା-ଗଲୁ (ଧକ୍କା ଦେଲା)
( ରଥିଆ ପଡ଼ିଯିବା ପରେ ହେବା ବେଳକୁ ଚେଣ୍ଡ ଆସୁଛି
ରୋହିଣୀ ।)

ରୋହିଣୀ – ଏଇଟା ଫେର କଏ ? ରଥିଆ ! ତୁ, ଏତେ ରସିକ
ପଡ଼ିଲୁଣି ?

ରଥିଆ — ନାଇଁ ନାଇଁ (ପଳାଉ ପଳାଉ) ମୁଁ କହୁଛି ନୁହେଁ - ସେଇ
ସେଇ –

ରୋହିଣୀ – ଆଉ କଏ ପୂରିଆ ? ତୁ ଏତେ ରସିକ ?—କେବେଠୁଁ ମ ?
( କସ୍ତା ଦେଖାଇ ) କସ୍ତା ଦେଇ ରସିକ ପଣିଆ କରିବୁ ?
ହଇରେ ରଇଜଳା ! ଟାଆଁ କଅଣ ନିମନ୍ତ୍ରିଆ ହେଇଗଲା—
ତୋ ମନେ ମନେ ? କହୁନୁ ? କଥା ବାହାରୁ ନାଇଁକି ତୁଣ୍ଡରୁ ?

ପୂରିଆ — କଅଣ ତେମେ ନାମା ! ଏମେତେ କହୁଚ ? ମୁଁ ତ କହୁଛି
ଜାଣି ନାଇଁ — କ କସ୍ତା—ମୋର ତ ନୁହେଁ—ମୁଁ ଦେଇ
ନାଇଁ ତ ଚମଲୀ କ । ସେ ମୋତେ—

ରୋହିଣୀ—ସେ ତତେ--ହଁ, ହେଇଥିବ ତ ! ପୋଡ଼ା ମୁହାଁ, ମୋତେ
ଚହ୍ନିଚୁ କି ? ମୋ ପାଖରେ ଗାଲୁ, ( କାନ ଧରି ) ଚାଲ,
ଚଉପାଢ଼ିକୁ, ତୋ ରସିକ ପଣିଆଁ ଦଉଚି ଛଡ଼େଇ ଆଜି ।

ପୂରିଆ – ଅରେ, ଆରେ –

ରୋହିଣୀ---ଆରେ ଆରେ ଆରେ ? ମୁଁ ଚମଲୀ ହେଇଚି – ନାଁ ?
ଚାଲ୍ ମୁହଁ ପୋଡ଼ା ରସିକ ! ( ନେଇଗଲା )

ଚମଲୀ – ଭଉଜ ! କାନଟାକୁ କାଟିଦବକି କିଏ ଅରି କହେ –
( ମୁହଁରେ ଲୁଗାଦେଇ ହସି ଚାଲିଗଲେ )

---

## ଷଷ୍ଠ ଦୃଶ୍ୟ

(କୁଟୀର) .

(ଜୟଦେବଙ୍କ ଘର ଭିତରେ ଜୟଦେବ ଗାଧୋଇ ଯାଇଥିବାବେଳେ ଶ୍ରୀକୃଷ୍ଣ ଗୃହାଭ୍ୟନ୍ତରକୁ ଆସି—ଶୁଣନ୍ତି ଯେ ରନ୍ଧନନିରତା ପଦ୍ମାବତୀ ମନେ ମନେ ଶ୍ରୀଗୀତଗୋବିନ୍ଦ ଗାଉଛନ୍ତି )

ପଦ୍ମା —(ନେପଥ୍ୟେ) ଗୀତ

ଅମଳ-ତରଳ-କୁବଳୟ-ନୟନେନ,
ତପତି ନ ସା କିଶଳୟ ଶୟନେନ,
ସଖି ! ଯା ରମିତା, ବନମାଳିନା ।
ବିକଶିତ ସରସିଜ-ଲଳିତ ମୁଖେନ ।
ସ୍ଫୁଟତି ନ ସା ମନସିଜ-ବିଶିଖେନ ।

ଶ୍ରୀକୃଷ୍ଣ—ଆହା ! କି ମଧୁର
ଶ୍ରୀ ଗୀତଗୋବିନ୍ଦ ।
ଭକ୍ତ ମୋର ଦିଏ ଭାଷା
ଭାବ ତାର ଗଢ଼େ ବସି ସତୀ ପଦ୍ମାବତୀ
ସରଳା ଅନ୍ତର—ଭାବେ ଟଳ ମଳ—
ଗାଏ ଗାଥା ମୋ'ର ରାତି ଦିନ,
ତେଣୁ ମୁଁ ନ ପାରେ ଦଣ୍ଡେ,
ଭୁଲି ଏ ସଙ୍ଗୀତ । (କ୍ଷଣ ବିଶ୍ରାମ)

ପଦ୍ମା—(ଗାଇଲେ) ଅମୃତ ମଧୁର ମୃଦୁତର ବଚନେନ
ଜ୍ୱଳତି ନ ସା ମଳୟଜପବନେନ ।

ଶ୍ରୀକୃଷ୍ଣ—କି ସୁନ୍ଦର ! କି ଲଳିତ !

ପଦ୍ମା—(ଗାଇଲେ) ସ୍ଥଳଜଳରୁହ ରୁଚି-କର-ଚରଣେନ
ଲୁଠତି ନ ସା ହିମକର କିରଣେନ ।

ଶ୍ରୀକୃଷ୍ଣ— ସଖି ଯାଂ, ରମିତା ବନମାଳିନା ।
( ଅଜ୍ଞାତରେ ଗାଇ ଦେଇଗଲେ)

ପଦ୍ମା—(ଆସି) କିଏ ? ତୁମେ ? ଏଁ ? ଏତେ ବେଗେ କେମିତି
ଫେରିଲ ? ଆରେ ସ୍ନାନ ସାରି ନାହଁ ପରା ?

ଶ୍ରୀକୃଷ୍ଣ—(ପରିବର୍ତ୍ତିତ ଜୟଦେବ ବେଶରେ ଅର୍ଦ୍ଧ ସ୍ୱଗତ କଣ୍ଠସ୍ୱରେ)
ଏଁ, ହଁ ପଦ୍ମା ! ସାରି ନାହିଁ ।
ଯାଉ ଯାଉ ପ୍ରାଚୀ ତଟରେ—
ପଥ ମଧ୍ୟେ—
କବିତାର ଅର୍ଦ୍ଧ ପଦ ହୋଇଛି ସ୍ମରଣ ।
ଆଣ, ଆଣ ଦେଖି ପାଣ୍ଡୁଲିପି ମୋର ।

ପଦ୍ମା—ଆଶ୍ଚର୍ଯ୍ୟ କବି ତ ! କବିତା, କବିତା କରି ଦିନ ଗଲାଣି
ମନଷକୁ— (କକ୍ଷ କକ୍ଷ ଭିତରକୁ ଯାଇ ପାଣ୍ଡୁଲିପି
ଆଣି ଦେଲେ) ।

ଶ୍ରୀକୃଷ୍ଣ—ଆହା ! ସରଳା ଭାବୁଛି ମନେ, ମୁହିଁ ଜୟଦେବ !

ପଦ୍ମା—ହେଇଟି ନଅ, ଲେଖନ ଆଉ ତମ ପୋଥି ।

କୃଷ୍ଣ—ଦିଅ, ହଁ ପଦ୍ମା ! ମୁଁ ଲେଖୁ ଲେଖୁ ତୁମେ ଟିକିଏ ଶୀଘ୍ର
ରନ୍ଧନ ଶେଷ କର ତ; ବଡ଼ କ୍ଷୁଧା ।

ପଦ୍ମା—ଗାଧୋଇ ନାହଁ ପରା !

କୃଷ୍ଣ—ଏଥିପାଇଁ ମନ୍ତ୍ରସ୍ନାନ କରିନେବି, ଅନେକ ବିଳମ୍ବ ହେଲାଣି ।

ପଦ୍ମା—ହଉ ତେବେ— (ଚାଲିଗଲେ)

କୃଷ୍ଣ—(ପୋଥି ଫିଟାଇ ଆହା ! ଆହା !
ଭକ୍ତର ଏ ଅମୃତ ଲେଖନୀ !—
ଝରିଅଛି ଯାର ମୁଖୁଁ
ଶ୍ରୀ ଗୀତଗୋବନ୍ଦ,—
ପାଗଳ କରିଛି ମୋତେ ।
ଆଣିଅଛି ଟାଣି ଗୋଲୋକରୁ ।
କି ମଧୁର ପଦାବଳୀ—
"ସ୍ଥଳ କମଳ ଗଞ୍ଜନଂ—ମମ ହୃଦୟ ରଞ୍ଜନଂ
ଜନିତ ରତିରଙ୍ଗ ପର ଭାଗଂ
ଭଣ ମସୃଣ ବାଣୀ କରବାଣୀ ଚରଣ ଦ୍ୱୟଂ
ସରସଲସଦଲକ୍ତକ ରାଗଂ
ସ୍ମର ଗରଳ ଖଣ୍ଡନଂ ମମ ଶିରସି ମଣ୍ଡନଂ"—
ଆଉ ପଦ ନ ପାରିଲି ଲେଖି !
ଭାବ ଗଦଗଦେ ତନୁ ହେଲା ଲୋମାଞ୍ଚିତ,
ବହେ ଅଶ୍ରୁଧାର,
ଲେଖନୀ ହୋଇଲା ସ୍ତବ୍ଧ,
କପରି ଲେଖିବ ଏବେ:-
"ଦେହି ପଦ ପଲ୍ଲବ ମୁଦାରଂ ?"
କିନ୍ତୁ, ନ ଜାଣିଲି କିବା
ଅନ୍ତରେ ଯେ ରହି ତା'ର
ପୂରୁଏ ମୁଁ ପଦର ଯୋଜନା ।
ଭକ୍ତ ବପୁ, ନ ପାରିଛି ସହି ତାର ପ୍ରଭୁର ଯନତା—
ଦ୍ୱାପରର ସତ୍ୟ ଯେ ଘଟଣା ।
ଭକ୍ତରେ !

ସ୍ୱହସ୍ତରେ ତେଣୁ ଆଜ,
ଗାଥା ତୋର କରିବ ପୂରଣ ।
ଲେଖି;—
**"ଦେହି ପଦପଲ୍ଲବମୁଦାରଂ"**
(ପଦ୍ମା ଢାଳେ ପାଣି ନେଇ ଆସି)

ପଦ୍ମା—ସ, ପୋଥି ଲେଖା ତ ସରିନାହିଁ, ମୁଁ ପଚା ତେଣେ—
କୃଷ୍ଣ—ହଁ, ସରିଲଣି ମୋର ।
ପଦ୍ମା—ତେବେ—
କୃଷ୍ଣ—(ଢାଳମାଗି ଧରି) ପୋଥି ରଖି ଦିଅ ।
(ପଦ୍ମା ପୋଥି ନେଇ ଚାଲିଗଲେ)
( ପଦ୍ମା ପଥକୁ ଚାହିଁ ) ସରଳା ପଦ୍ମାର ଠାକ !
କି ସୌଭାଗ୍ୟ ଆଜ !

———

## ସପ୍ତମ ଦୃଶ୍ୟ

(ପଥ)

(ପରାଶର ଢାଳେ ପାଣି ଓ ଲୁଗା ହାତରେ ଧରି ଆସୁଛନ୍ତି)

ପରାଶର—

( ଗୀତ )

ରତି ସୁଖ ସାରେ ଗତମଭିସାରେ ମଦନ ମନୋହର ବେଶଂ
ନ କୁରୁ ନିତମ୍ବିନି, ଗମନ ବିଳମ୍ବନ ମନୁସର ତଂ ହୃଦୟେଶଂ
ଧୀର ସମୀରେ, ଯମୁନା ତୀରେ, ବସତି ବନେ ବନମାଳୀ
ପୀନ ପୟୋଧର ପରିସର-ମର୍ଦ୍ଦନ-ଚଞ୍ଚଳ କର-ଯୁଗଶାଳୀ ।

ନାମ-ସମେତଂ କୃତ-ସଙ୍କେତଂ ବାଦୟତେ ମୃଦୁ ବେଣୁମ୍ ।
ବହୁ ମନୁତେ ନନୁ ତେ ତନୁ-ସଙ୍ଗତ-ପବନ-ଚଳିତମପି ରେଣୁ
ପତତି ପତତ୍ରେ ବିଚଳିତ ପତ୍ରେ ଶଙ୍କିତ ଭବଦୁପଯାନମ୍
ରଚୟତି ଶୟନଂ ସଚକିତ ନୟନଂ ପଶ୍ୟତି ତବ ପନ୍ଥାନମ୍ ।୧୦

( ଆଉ ପଦ ସ୍ମରଣ ହେଉ ନାହିଁ, ପଛରେ ଜୟଦେବ ଆସୁଛନ୍ତି ମନେ କରି ଡାକିଲେ ) ତା'ପରେ ? ପଦଗୁଡ଼ିକ କଅଣ କହ ! ଠିକ୍ ସ୍ମରଣ ହେଉନାହିଁ ମୋର । ( ବୁଲି ଦେଖିଲେ କେହି ନାହିଁ ତାଙ୍କ ପଛରେ) ଓଃ ! କେହି ନାହିଁ ! ଜୟଦେବ କାହାନ୍ତି ତେବେ ? ଗାଧୋଇସାରି ଆସୁ ଆସୁ—(ପଛକୁ ଫେରିବାକୁ ବସିଲେ । ଏତିକିବେଳେ ଜୟଦେବ ଆସିଲେ, ଜୟଦେବଙ୍କୁ ଦେଖି ପରାଶର ପଚାରିଲେ) ଜୟଦେବ !

ଜୟ – ହଁ ପରାଶର, ଆସୁ ଆସୁ ମୋର ଟିକିଏ ଡେରି ହୋଇଗଲା ।

ପରା – ତୁମେ ସନ୍ଧ୍ୟା ସାରି କୂଳକୁ ଆସିଥିଲ ଯେ ! ମୁଁ ମନେକଲି ତୁମେ ମୋ ପଛେ ପଛେ ଆସୁଛ । କିନ୍ତୁ—

ଜୟ – ହଁ ପରାଶର କୂଳକୁ ଉଠିଥିଲି । କିନ୍ତୁ । ହଠାତ୍—

ପରା—କଅଣ ହେଲା ତୁମର ?

ଜୟ—ନା, ମୋର ତ କିଛି ନୁହେଁ ।

ପରା—ତେବେ ?

ଜୟ – ସୂର୍ଯ୍ୟ କିରଣ ସଂପାତରେ ଗଙ୍ଗାର ଦୃଶ୍ୟ ! ସେ ଲୋଭ ଏଡ଼ି ପାରିଲି ନାହିଁ ପରାଶର ! ଯେମିତି କେତେ ଜଳକୁମାରୀ ଆଖି ମେଲାଇ ତାର ବିଶାଳ କୋଳରେ ଥରେ ଥରେ ବୁଡ଼ୁଛନ୍ତି ! ସୁନ୍ଦର ନୀଳ ପଦ୍ମ ଆଖି ! ଗଙ୍ଗାର କି ମାଧୁରୀ !

ପଦ୍ମ—ତୂର୍ଣ୍ଣ ଦେଖି ଭୁଲଯାଅନାହିଁ ସ୍ୱବୁଦ୍ଧ କବି ! ଗଙ୍ଗାନୁହେଁ ପ୍ରାଚୀ ।

ଜୟ—ଭୁଲ କହୁଛ ପଦ୍ମାବତି ! କମ୍ୱା ତୁମେ ବୋଧହୁଏ ଜାଣ ନାହିଁ ପ୍ରାଚୀର ମହାତ୍ମ୍ୟ । କେବେ ପଦ୍ମପୁରାଣ ପଢ଼ିଛ ? ତ୍ରିବେଣୀ ତୀର୍ଥ ଆଜ କାହିଁକି ଏଇଠାକୁ କହନ୍ତି ? ଏଇ ପ୍ରାଚୀ ତ ଗଙ୍ଗା । ପ୍ରାଚୀ ସ୍ନାନରେ ଗଙ୍ଗାସ୍ନାନ ଫଳ ।

ପଦ୍ମ—ଓ, ସେଇଥିପାଇଁ ଏଠି ଅକ୍ଷୟ ତୃତୀୟା ଦିନ ଗଙ୍ଗା ମେଳା ହୁଏ ? ସେଇଠା ଗୋଟାଏ ଏମିତି ସାଧାରଣ ମେଳା ବୋଲି ଆଜି ପର୍ଯ୍ୟନ୍ତ ମୋର ଧାରଣା ଥିଲା ।

ଜୟ—ନାଁ, ନା, କେବଳ ଏଇ ତୀର୍ଥର ଗୌରବ ସ୍ମରଣ ପାଇଁ ଏ ମେଳାର ଆରମ୍ଭ । ଆଜ ଅନ୍ତର୍ବେଦୀ ତ ଦେଖିଥିବ । ବଡ଼ ପବିତ୍ର ସ୍ଥାନ ସେ । ପଦ୍ମପୁରାଣରେ ପ୍ରାଚୀ ମହାତ୍ମ୍ୟ ପଢ଼ିବ । ସେଥିରେ ସ୍ପଷ୍ଟ ଲେଖାଅଛି ଯେ ଅକ୍ଷୟ ତୃତୀୟା ଦିନ ଗଙ୍ଗା ଏଇ ଅମର ପ୍ରାଚୀରେ ପଦ ପ୍ରକ୍ଷାଳନ କରନ୍ତି । ତେଣୁ ପ୍ରାଚୀର ଜଳ, ଗଙ୍ଗା ପରି ପବିତ୍ର । ମୋର ସେ ଋଷିବାକ୍ୟ ଠିକ୍ ସ୍ମରଣ ହେଉ ନାହିଁ ।

ପଦ୍ମ—ଉତ୍ତମ ! ଏଇଠା ଗାଆଁର ଦାଣ୍ଡ ଯେ ! ମନେ ନାହିଁ ? ତୁମେ ସ୍ନାନ ସାରି ଘରକୁ ଯାଇ ଭୋଜନ କଲେ, ପଦ୍ମାବତୀ ଜଳଗ୍ରହଣ କରିବେ ।

ଜୟ—ଓ, ବାସ୍ତବିକ, ମୁଁ ଭୁଲି ଯାଇଥିଲି ।

ପଦ୍ମ—ମନ ନୁହେଁ । ତୁମର ସାମାନ୍ୟ ଭ୍ରମରେ ଯେ ଗୋଟିଏ ପ୍ରାଣୀ ତେଣେ ଉପବାସରେ ମରିବ । ଆସ । (ଚାଲିଗଲେ)

# ଅଷ୍ଟମ ଦୃଶ୍ୟ

( ଜୟଦେବଙ୍କ କୁଟୀର )

(ଭିତରୁ ଉଚ୍ଛିଷ୍ଟ ଥାଳୀ ଘେନି ଘରର ବାରଣ୍ଡାରେ ରଖି ପଦ୍ମା, କବାଟ ଅଉଜାଇ ଦେଇ ଆସିଲେ, ବସି ଖାଇବାର ଉପକ୍ରମ କରୁଥିଲେ ।)

ଭିତରୁ—ଯାଅ, ତୁମେ ଭୋଜନ କର ପଦ୍ମା ! ଅନେକ ବିଳମ୍ବ ହେଲାଣି, ମୁଁ ଟିକଏ ବିଶ୍ରାମ କରେ ।

( ପଦ୍ମା ଭୋଜନରେ ବସିଲେ )

ଜୟ—(ପ୍ରବେଶ)—ପଦ୍ମା !

ପଦ୍ମା—(ଚମକି ପଡ଼ିଲେ) କିଏ ?

ଜୟ—(ଭିତରକୁ ଆସି) ମଠା ଖଣ୍ଡ ଦିଅ ତ । ଓଃ, ତୁମେ ଖାଇ ବସିଛ ? ଆଗୁ ହଉ । କୋଉଠି ଅଛି କୁହନା, ମୁଁ ନେଇ ଆସେଁ ।

ପଦ୍ମା—ଏଁ ? (ତୁନ୍ହିଁ ରହିଲେ ଚାହିଁକା ହୋଇ)

ଜୟ କଅଣ ପଦ୍ମା ! ଅନ୍ନଗୁଣ୍ଡାଟି ଧରି ଏମିତି ଆଶ୍ଚର୍ଯ୍ୟ ହୋଇ ମୋତେ ଚାହିଁ ରହିଲ ଯେ !

ପଦ୍ମା—ପ୍ରଭୁ—

ଜୟ—କଅଣ ପଦ୍ମା ?

ପଦ୍ମା—ଏ କି କପଟ ଆଜି ?

ପଦ୍ମା—ନାଁ, ନାଁ, ପାପ ! ତୁମେ ଯେ ପଦ୍ମାର ପ୍ରଭୁ, କପଟ ତ ତମଠି ସମ୍ଭବ ନୁହେଁ । ମୁଁ କଅଣ ସ୍ୱପ୍ନ ଦେଖିଲି ତେବେ ? ଚେତି ରହି କଅଣ ମନୁଷ୍ୟ ସ୍ୱପ୍ନ ଦେଖେ ?

ଜୟ—ମୁଁ ତ ତୁମ କଥାରୁ କିଛି ବୁଝି ପାରୁନାହିଁ ପଦ୍ମା !

ପଦ୍ମା—( ସ୍ୱଗତଃ ) ମୁଁ ଚେଇଁଛି ନା ସ୍ୱପ୍ନ ଦେଖୁଛି, ଏ ସବୁ କଅଣ ?

ଜୟ—ହାତରେ ଅନ୍ନଗ୍ରାସଟି ଧରି କାଠ ପରି ଚାହିଁ ରହିଲ ଯେ ପଦ୍ମା, କଥାଟା କଅଣ ?

ପଦ୍ମା—ପ୍ରଭୁ ! ଏ କି ମାୟା ତୁମ୍ଭର ?

ଜୟ—ମାୟା !

ପଦ୍ମା—ଗାଧୋଇ ଯାଉ ଯାଉ ବାଟରୁ ଫେରି ଆସି ମୋତେ ଖେଦା ଆଉ ଲେଖନୀ ମାଗିଲ । କହିଲ କଅଣନା—ମଝି ବାଟରେ ପଦ ସ୍ମରଣ ହେବାରୁ ତରତର ହୋଇ ଫେରି ଆସିଛି ।

ଜୟ—ମୁଁ ! ଫେରି ଆସିଥିଲି ? ଏ କଅଣ ତୁମେ କହୁଚ ପଦ୍ମା !

ପଦ୍ମା—ଖାଲି ସେତିକି ତ ନୁହେଁ, ତା'ପରେ ପାଦ ପୂରଣ କରି ସାରି କ୍ଷୁଧା ହେଉଛି ବୋଲି କହି, ଘରେ ମନ୍ତ୍ରସ୍ନାନ କରି ଭୋଜନ ପରେ ବିଶ୍ରାମ ନେବାକୁ—

ଜୟ—ଏଁ ଭୋଜନ ? ମୁଁ କରିଛି ? ମୁଁ ଫେରି ଆସି ଅର୍ଦ୍ଧପଦ ପୂରଣ କରିଛି ? ପଦ୍ମା ! ପଦ୍ମା ! ତୁମେ ଏ କଅଣ ସ୍ୱପ୍ନର କଥା କହୁଚ ! ବିଶ୍ରାମ ! କେଉଁଠି ?

ପଦ୍ମା—(ଉଠି) ଏଇ ଘରେ—(ଯାଇ) ଏଇ ଘରେ !

ଜୟ—ଏଇ ଘରେ ! ଏ କଅଣ ? କୋଟିଏ ପାରିଜାତର ଗନ୍ଧ ! ପଦ୍ମା ! ପଦ୍ମା ! ଦେଖି ପୋଥି !

ପଦ୍ମା—(ଘର ଭିତରକୁ ଯାଇ) ନଉଚ ।

ଜୟ—(ବାହାରକୁ ଆସି) ଚେଇଁଥାଇ ଲୋକେ ସ୍ୱପ୍ନ ଦେଖନ୍ତି କେବେ ? ନାଇଁ ତ ! ମୁଁ ତ ସମ୍ପୂର୍ଣ୍ଣ ଜାଗ୍ରତ, କିନ୍ତୁ ଏ ସବୁ କଅଣ ?

ପଦ୍ମା—ହେଇଟି, ନିଅ ପୋଥି ।

ଜୟ — ( ଦେଖି ପଢ଼ି ) । ସ୍ମର ଗରଳ ଖଣ୍ଡନଂ
ମମ ଶିରସି ମଣ୍ଡନଂ
**ଦେହି ପଦ ପଲ୍ଲବ ମୁଦାରଂ**

ଦେହି ପଦ ପଲ୍ଲବ ମୁଦାରଂ ! ପଦ୍ମା ! ସହସ୍ର ଭାବନାରେ ଗୁମ୍ଫା ଦେଇ ଯାହା ମୁଁ ମନରେ ଗୁପ୍ତ ରଖିଥିଲି, କିଏ ଲେଖିଲା ? କିଏ ସେ ଲେଖିଲା ତାକୁ ? ଏ କଅଣ ମନୁଷ୍ୟର କାର୍ଯ୍ୟ ! ହେ ଗୋବିନ୍ଦ ! ଲେଖିବି, ଲେଖିବି ବୋଲି ଯାହା ଲେଖିବାକୁ ଶଏଥର ମୋର ଲେଖନୀ ଥରି ଉଠିଛି, ସେଇ ଅପ୍ରକାଶିତ ମନକଥା ମୋର, କିଏ—? କିଏ ଲେଖିଛି ? ଏ କବିତାର ଅର୍ଦ୍ଧପଦ ପୂରଣ କରିଛି କିଏ ? ପଦ୍ମା, — ନାଁ । ନାଁ ତୁମେ, ଗୋବିନ୍ଦ ! ତୁମ ଛଡ଼ା କାହାର ଅଛି ଏ ସାଧ୍ୟ ? ପଦ୍ମା ! ପଦ୍ମା !
ମୁଁ ସବୁ ବୁଝିଲି,
ମହା ଭାଗ୍ୟବତୀ ତୁମେ,
ପତ୍ନୀ ନୁହଁ ମୋର ପୂଜ୍ୟା —
ପରମ ଅରାଧ୍ୟା, — ଦେବୀ —

ପଦ୍ମା — ପ୍ରଭୁ ! ଦେବତା ! ଏ କଅଣ କହୁଚ ?
ଦାସୀ ମୁଁ, କ୍ଷମାକର ମୋତେ ।
ନ ଜାଣି ଅପରାଧ ଅର୍ଜିଛି ।
ସ୍ୱାମୀ ପଦରେ ନୈବେଦ୍ୟ ନ କରି,
ମୁଁ ନିଜେ —

ଜୟ — ପୁଣ୍ୟଫଳ, ପୁଣ୍ୟଫଳ ତୁମର । ଧନ୍ୟ ତୁମେ, ତୁମେ ଧନ୍ୟ !
ଦେବୀ ତୁମେ, ଜୟଦେବର ଭାଗ୍ୟରେ ଯାହା କେବଳ

ବଡ଼ମନା, ତୁମ ପାଖରେ ସହଜରେ ସେ ଧରା ପଡ଼ିଛି ।
ତୁମେ ସାକ୍ଷାତ ଦର୍ଶନ ପାଇଛ ତାର । ଦୁଃଖ କାହିଁକି ପଦ୍ମା ?
ନାଇଁ, ନାଇଁ, ଆଣ ଗୋବନ୍ଦଙ୍କୁ ଯେଉଁ ଅନ୍ନ ପରଷିଲ,
କାହିଁ ? କଅଣ କଲ ସେ ମହାପ୍ରସାଦ ?

( ବାହାରିଲେ ଆଣିବାକୁ )

ପଦ୍ମା —( ବାଧାଦେଇ ) ପ୍ରଭୁ !

ଜୟ—କୁଣ୍ଠା କାହିଁକି ପଦ୍ମା ! ବାଧା ଦିଅ ନାହିଁ ମୋତେ—
ଉଚ୍ଛିଷ୍ଟ ବୋଲି ମହାପ୍ରସାଦ ହୋଇପାରେ ନାହିଁ ସତୀ !
ତୁମେ ପରମ ସୌଭାଗ୍ୟବତୀ ! ବୁଝୁନାହଁ ? ଦେବତା
ଯାହାର କଣିକା ମାତ୍ର ଚାହିଁ ବସେ, ସେ ମହାପ୍ରସାଦ କି
କେବେ ଅଇଁଠା ହୋଇପାରେ ? କୈବଲ୍ୟକୁ କେହି
କେବେ ଉଚ୍ଛିଷ୍ଟ କହେ ? ଛି, ଛି, ପାପ କଥା ମୁହଁରେ
ଧରନାହିଁ ସତୀ ।

ପଦ୍ମା—ପ୍ରଭୁ ! ପ୍ରଭୁ !

ଜୟ—ବାଧା ଦିଅନାହିଁ ପଦ୍ମା !
ବହୁ ଭାଗ୍ୟର ଫଳରୁ ପାଇଛୁ
ଏ ମହାପ୍ରସାଦ ।
ଜୀବନର ଏ ସୁଦିନରେ
ତୁମେ,—ତୁମେ ଦୁଃଖ କର ନାହିଁ ଦେବୀ !
ଆସ, ଖାଅ ।
ଆନନ୍ଦ ସାଗରରେ ଆଜ
ପୂର୍ଣ୍ଣିମାର ଜୁଆର ଖେଳି ଉଠେ ।

ଗାଅ ପଦ୍ମା ! ଗାଅ ମୋ ସଙ୍ଗରେ—( ଗାଇଲେ— )
ଅଭିନବ ଜଳଧର ସୁନ୍ଦର, ଧୃତ ମନ୍ଦର
ଶ୍ରୀମୁଖ ଚନ୍ଦ୍ରଚକୋର—ଜୟ ଜୟ ଦେବହରେ ।୧।
ତବ ଚରଣେ ପ୍ରଣତାବୟମିତି ଭାବୟ,
କୁରୁକୁଶଳଂ ପ୍ରଣତେଷୁ—ଜୟ ଜୟ ଦେବହରେ ।୨।
ଶ୍ରୀ ଜୟଦେବ କବେରିଦଂ, କୁରୁତେ ମୁଦଂ,
ମଙ୍ଗଳ ମୁଜ୍ଜ୍ୱଳ ଗୀତି, ଜୟ ଜୟ ଦେବହରେ ।୩।

( ଅନ୍ନଥାଳୀ ମଥା ଉପରକୁ ଟେକ, ମୁଣ୍ଡ ନୁଆଇଁଲେ ପଦ୍ମା, କରଯୋଡ଼ି ଶାଷ୍ଟ୍ରୁ ଜପୁନରେ ଦଣ୍ଡାୟମାନା । )



# ତୃତୀୟ ଅଙ୍କ

## ପ୍ରଥମ ଦୃଶ୍ୟ

( କଳାହାଟ ଦ୍ୱାର—ଜୟଦେବ ପଦ୍ମା ଗାଉଥିଲେ )

ଗୀତ

ବଦସି ଯଦି କିଞ୍ଚିଦପି ଦନ୍ତ-ରୁଚି-କୌମୁଦୀ
ହରତି ଦର-ତିମିରମତିଘୋରମ୍
ସ୍ଫୁରଦଧର-ସୀଧବେ ତବ ବଦନ-ଚନ୍ଦ୍ରମା
ରୋଚୟତି ଲୋଚନ ଚକୋରମ୍ ।
ପ୍ରିୟେ ଚାରୁଶୀଳେ ମୁଞ୍ଚ ମୟି ମାନମନିଦାନଂ—
ସପଦି ମଦନାନଳୋ ଦହତି ମମ ମାନସଂ
ଦେହି ମୁଖ-କମଳ-ମଧୁପାନମ୍,
ସ୍ଥଳ-କମଳ-ଗଞ୍ଜନଂ ମମ ହୃଦୟ-ରଞ୍ଜନଂ
ଜନିତ-ରତି-ରଙ୍ଗ-ପରଭାଗମ୍
ଭଣ ମସୃଣ-ବାଣି କରବାଣି ଚରଣ ଦ୍ୱୟଂ
ସରସ-ଲସଦଲକ୍ତକରାଗମ୍
ସ୍ମର ଗରଳ ଖଣ୍ଡନମ୍—ମମ ଶିରସି ମଣ୍ଡନମ୍
ଦେହି ପଦ ପଲ୍ଲବ ମୁଦାରମ୍
ଜ୍ୱଳତି-ମୟି ଦାରୁଣୋ ମଦନ-କଦନାନଳୋ
ହରତୁ ତଦୁପାହିତ-ବିକାରମ୍
ଇତି ଚଟୁଲ-ଚାଟୁ-ପଟୁ, ଚାରୁ ମୁର-ବୈରିଣୋ
ରାଧିକାମଧି ବଚନ ଜାତମ୍ ।

ଜୟନ୍ତି ପଦ୍ମାବତୀରମଣ ଜୟଦେବ କବି
ଭାରତୀ ଭଣିତ ମତିଶାତ୍ମ୍ ।
( ଜଣେ ବୋହିଆ ଆସି ଉଣ୍ଡି ଦେଇଗଲା, କଥୁ କଥୁ )

ବୋଃ—ଝପର ଝାଇଁ ଝପର ଝାଇଁ, ଝପର ଝାଇଁ, ବେହ୍ମପୋ, ଝାଞ୍ଜ ବାଜୁଥିବ, ଫେଷ୍ଟ ପଡ଼ୁଥିବ କି ଆଜ ବଦନକପାକ ? ଛେଳ ବୁଢ଼ା ହେଲାଣି ଦୁଇ ଘଡ଼ି ହବ, ବେହ୍ମପୋ ଧୂପ ଉଠିବାକୁ ନାହିଁ, ବଡ଼ପଣ୍ଡା କଅଣ ଭୁଲେଇ ପଡ଼ିଲେଣି କି ଭାଙ୍ଗ ନଶାରେ ?

ଦେଉଳକରଣ—(ଆସି ଠିଆହେଲେ । ଜୟଦେବ ଓ ପଦ୍ମାବତୀଙ୍କୁ ଖାଲି ଗୋଡ଼ଠୁ ମୁଣ୍ଡପାଏ ଚାହିଁ ରହିଥାନ୍ତି ସେ)

[ ଜୟଦେବ ଓ ପଦ୍ମା ପୂର୍ବବତ୍ ଆଖିମୁଦି ଗାଉଥିଲେ, ଗୀତ ଶେଷକରି ପ୍ରଣାମ କଲେ )

ଜୟ—(ଦେଉଳକରଣଙ୍କୁ) ଆପଣଙ୍କ ଘର ଶ୍ରୀକ୍ଷେତ୍ରରେ ?

ଦେ: କ—ହଁ ।

ଜୟ—ପ୍ରଭୁଙ୍କ ଦ୍ୱାର ଫିଟିବ କେତେବେଳେ ? ଆଜ ମଠ ହେଇଛି କାହିଁକି ?

ଦେ. କ—ଏଇ ଧୂପ ବଢ଼ିଲେ ଆପଣମାନେ ଆଗ ପାଖରେ ବୁଲି ଯାଇ ଦର୍ଶନ କରିବେ । ପାଣି ପଡ଼ୁଥିବ, ଦେଖିକରି ଯିବେ ।

ଜୟ—ଆଗ ଦ୍ୱାରବାଟେ ଯାଉ ଅଛୁ ?

ଦେ: କ—ଦ୍ୱାରିକ କହିବେ ଦେଉଳକରଣ କହିଲେ ବୋଲି ।

ଜୟ—ଆପଣ ପ୍ରଭୁଙ୍କ ଦେଉଳକରଣ ? ଭାଗ୍ୟବାନ୍ ଭକ୍ତ ଆପଣ ।

ଦେ: କ—ଛେଳ ଉଠାରେ ପାଣିତିଆ !

ଦେ: କ—ଦେଇନି ଧୂପ ବତିଲାଣି । ଯାଆନ୍ତୁ ସେଇ ବାଟେ ।

ଜୟ—ଅଜ୍ଞା, (ଦେବ୍ରାବଣୀଙ୍କ ପ୍ରତି) ଆସ (ପ୍ରସ୍ଥାନ)

ଦେ: କ—ଇଏ କଅଣ ସେଇ ଜୟଦେବ !

ବୃଦ୍ଧ ପଣ୍ଡା—(ମନ୍ଦିର ଭିତରୁ ଆସିଲେ) ମତେ ତଲବ କରିଥିଲେ ଦେଉଳକରଣେ ?

ଦେ: କ—(ଅନ୍ୟମନସ୍କ ଭାବେ) ହଁ ଯେ—ହଁ—

ବୃ: ପ -- କେତେ କାର୍ଯ୍ୟରେ ?

ଦେ: କ—ଧୂପ ଏତେ ମଠ ଅବେକାଳ କାହିଁକି ହଉଚି ? ମହାରାଜା ରଖି ଦୋହାଲ୍ ମୋହାଲ୍ ଅମ ଉପରେ ସବୁ !

ବୃ: ପ—ମୁଁ କଅଣ କହେବ, ମୋତେ ଦୋଷ କଅଣ ? ମୁଁ ହଅଁଙ୍କ ପୂଜା ଗ୍ରହଣକୁ ହେଲିଣି ଅଜ୍ଞା ! ଏବେ କେଉ ହନ ହେଲା କାହିଁକି ଯେ ଏମେତ ହଉଚି ମୁଁ ତ ନଜେ ବୁଝିପାରୁ ନାହିଁ କଅଣ ହଉଚି ?

ଦେ: କ – କଅଣ ହଉଚି ?

ବୃ: ପ—କଅଣ ଆଉ କହିବି ଅଜ୍ଞା ! ପୂଜା ନୈବେଦ୍ୟ ବେଳେ ପାଣି ଚକ୍ଷୁ ଠେଲିବେଲକୁ ହଅଁ ବରାବର ଚକ୍ଷୁରେ ଦର୍ଶନ ହଅନ୍ତି, ତେବେ ଯାଇ ପୂଜା ବଢ଼େ । ଏବେ କେତେ ହନ ହେବ କଅଣ ଯେ ହଉଛି, ମୁଁ ତ ଚକ୍ଷୁ ଧରି ବସିଛି, ଦର୍ଶନ ମିଳୁନାହିଁ । କିମିତି ଭୋଗ ବଢ଼େଇବି ?

ଦେ: କ – ଏ କ କଥାଗୁଡ଼ା ତୁମେ କହୁଛ ଯେ, ଶାଢ଼ୀକି ପାଉନାହିଁ କ ପେଡକ ପାଉନାହିଁ ? ହଅଁ ଦର୍ଶନ ଦଉନାହାନ୍ତି, ମହାରାଜା ଏକଥା ସତ ମଣିବେ ? ସବୁଦନ ତ ଦଉଥିଲେ, ଆଉ ଏବେ—

ବ: ପ—ମୁଣ୍ଡ କାଟ ପଛେ କରନ୍ତୁ ମହାରାଜା, ମୁଁ ଆଜ ମିଛକଥା କହିପାରିବି ନାହିଁ ।

ଦେଃ କ—ନେଫର୍ ଧୂପ ବଢ଼ୁଚି କେମିତି ?

ବ: ପ—ଯେତେବେଳେ ଦର୍ଶନମିଳୁଚି । ଅନୁସରଣରେ— ରହୁଚି, ଏବେଣ ଧୂପ ମଠ ଧଉଚି ।

ଦେଃ କ—କେଜାଣି ଉମର କିଛି ଗଲ୍ତି ଥିବ, ଶୁଦ୍ଧ ମୃତ ହୋଇ ଦେଉଳକୁ ଆସୁଚ ଟି ?

ବ: ପ—କି କଥା ଯେ କହିବା ହେଉଚି ଆଜ୍ଞା ?

ଦେ: କ—ଆଜ ନେବେ କାହିଁକି ଏତେ ମଠ ?

ବ: ପ—ମୋ ଜାଣିବାରେ ଆଉ ତ କିଛି ନାହିଁ । ଯେଉଁ ଦିନ ଜୟଦେବ ଗୋସେଇଁ ଆଉ ତାଙ୍କ ସ୍ତ୍ରୀ ଆସି ଚନ୍ଦ୍ର ଅର୍ଗଳୀ ପାଖେ ଗୀତ ଗାଉଥିଲେ ସେଇଦିନ ଭୋଗବେଳେ—

ଦେ: କ—ଏ ଗୋଟେ କଥା ? ବଡ଼ ଦେଉଳରେ କଅଣ କେବେ କେହି ଗୀତ ଗାଇବେ ନାହିଁ, ଶ୍ଳୋକ ପଢ଼ିବେ ନାହିଁ ? ଦିଅଁ କଅଣ ଉଠିଯିବେ ଯାଉଛନ୍ତି ଗୀତ ଶୁଣି ? ତୁମେ ଅନ୍ୟମନସ୍କ ହେଉଥିବ, ତାଙ୍କ ଗୀତରେ କି କଅଣ ?

ବ: ପ—ମୋ ଅନ୍ୟମନସ୍କ ପାଇଁ କଅଣ ଅଛି ! ଆଜ୍ଞା ଦିଅଁ ପଣ୍ଡା ଦର୍ଶନ ଦେଉନାହାନ୍ତି, ବନ୍ଦ ଭିତରେ ! ଆପଣ ଦିନେ ହୋଇ ଦିନ ଆସି କଥାଟାକୁ ଠିକେ ପରିଚାଳ କଲେ ।

ଦେ: କ—ହଁ, ସେଇ ଦିନେ ତ ଆଜ ବ ଗାଉଥିଲେ, ଏଇନେ ଗଲେ ।

ବ: ପ—ମୁଁ ଦେଖିପାରି ନାହିଁ ତାଙ୍କୁ ! ତେଣେ ତ ଭିତର ପଟେ ଥାଏଁ—ଲୋକେ ସବୁ କହୁଛନ୍ତି—

ଦେ: କ—ହଉ, ହଉ, ତୁମେ ଚାଲ । ଗୁମ୍ଫରେ ସେଇଆ ଜଣା ପଡ଼ୁ

ଆସିବ । ମୁଁ ଫେର୍ କାଲିପ'ର ଆସି, କଥାଟାର ତଥ୍ୟ ବୁଝିନେବ ।

ବ: ପ—ବୁଲିବା ହଉ, ସତ କହିବା ପାଇଁ ଡର କଅଣ ? କାଳିଆ ଜାଣେ, ମୋ କଥା ସତ କି ମିଛ ।

( ଯାଉ ଯାଉ କହି କହି ଗଲେ )

---

## ଦ୍ୱିତୀୟ ଦୃଶ୍ୟ

[ପୋଥି ଲେଖନୀ ସହ ନିବିଷ୍ଟମନା ଜୟଦେବ ଶ୍ରୀ ଗୀତଗୋବିନ୍ଦ ଲେଖୁଥିଲେ ]

( ଲେଖନୀ ଶବ୍ଦ )

ଜୟ—(ଲେଖୁଥିଲେ ପଦେ ପଦେ, ନିଜେ ପଢ଼ୁଥିଲେ ତାଙ୍କୁ ଥରେ ଥରେ )

ରାଧାବଦନ-ବିଲୋକନ-ବିକସିତ-ବିବିଧ-ବିକାର-ବିଭଙ୍ଗମ୍ ।
ଜଲନିଧିମିବ-ବିଧୁମଣ୍ଡଳ-ଦର୍ଶନ-ତରଳିତ-ତୁଙ୍ଗ-ତରଙ୍ଗମ୍ ।
ହରିମେକ ରସଂ, ଚିରମଭିଲଷିତ ବିଳାସଂ ।
ସା ଦଦର୍ଶ ଗୁରୁହର୍ଷ ବଶଂମ୍ବଦ ବଦନମନଙ୍ଗ ନିବାସମ୍ ॥
ହାରମମଳ ତର-ତାରମୁରସି ଦଧତଂ ପରିଲମ୍ବ୍ୟ ବିଦୂରମ୍ ।
ସ୍ଫୁଟତରଫେନ-କଦମ୍ବକରମ୍ବିତମିବ ଯମୁନା ଜଳ-ପୂରମ୍ ।
ଶ୍ୟାମଳ-ମୃଦୁଳ-କଳେବର-ମଣ୍ଡଳ ମଧିଗତ-ଗୌର ଦୁକୂଳମ୍
ନୀଳ ନଳିନମିବ-ପୀତ ପରାଗ ପଟଳ-ଭର ବଳୟିତ-ମୂଳମ୍ ॥
ତରଳ ଦୃଗଞ୍ଚଳ-ଚଳନ-ମନୋହର-ବଦନ-ଜନିତ ରତି ରାଗମ୍ ।
ସ୍ଫୁଟ-କମଳୋଦର-ଖେଳିତ ଖଞ୍ଜନ ଯୁଗମିବ ଶରଦି ତଡ଼ାଗମ୍

( କଥାରେ ପଡ଼ିବା ପରି କରି, ପୁଣି ସ୍ୱର ଯୋଜନା
କରୁଥିଲେ, ସେତିକି ବେଳେ ଜୟ ଦେବଙ୍କାହିଁ, କେଉଁ
ଆଡ଼ରୁ ଗୋଟିଏ ଲଳିତ କଣ୍ଠ ଅପର ପାଦ ଗାଇଦେଲା !
ଜୟଦେବ ତଟସ୍ଥ ହୋଇ ଚାହିଁ ରହିଲେ, ବୁଝି ପାରିଲେ
ନାହିଁ କିଏସେ ଗାଏ— )

ଜୟଦେବ—( ସ୍ୱଗତ ) କିଏ !

ଭାବନାର ଧାରା ମୋର
ଉଚ୍ଛୁଳଇ କା'ର କମ କଣ୍ଠେ ?
କିଏ ଗାଏ ? କିଏ ଗାଏ —
ମୋର ମନ-କଥା ?
ପରାଶର ! ପରାଶର !

ପରାଶର—(ପ୍ରବେଶ) ମୋତେ ଡାକିଲ ?

ଜୟଦେବ — ହଁ, ହଁ, ପରାଶର !

ମୁଁ କିଛି ବୁଝି ପାରୁନାହିଁ,
ସବୁ ଯେମିତି ମୋର ଗଣ୍ଡଗୋଳ ହୋଇଗଲା,
ଏଇ ଦେଖ,
ଲେଖିଛି ମୁଁ ପ୍ରଥମ ଚରଣ ମାତ୍ର
ଶ୍ରୀ ଗୀତଗୋବିନ୍ଦ
ଏକାଦଶ ସର୍ଗ, ତୃତୀୟ ସଙ୍ଗୀତ;
କିନ୍ତୁ, କି ଆଶ୍ଚର୍ଯ୍ୟ ପରାଶର !
ଏହାପରେ, ଯେ ଚରଣ—
ଲେଖିବାକୁ ଥିଲା ମୋର ମନେ,
ଠିକ୍ ସେହି ପାଦ — ସେହି ପଂକ୍ତି —
କିଏ, ଗାଏ !

ଅକ୍ଷରେ, ଅକ୍ଷରେ ଯାଏ ମିଳି
ମୋ ଭାବନା ଭୁଲେ !
କିଏ ? କିଏ ଗାଏ ମନର ସଙ୍ଗୀତ ମୋର ?

ପରାଶର—(ହସି) ଭ୍ରମ !
କବି ! ଏ ଭ୍ରମର ଚିତ୍ତର ବିକାର ମାତ୍ର,
ନୋହିଲେ—
ଯେ ସ୍ୱର ଝଙ୍କାର ଉଠେ ହୃଦୟେ ତୁମର,
ଜୟଦେବ କରୁଛନ୍ତି ଯେ ଭାବ କଳ୍ପନା,
ସାଧ୍ୟ କାର ଏ ବିଶ୍ୱରେ
ମିଳାଇବ ପଦ ?
ଅସମ୍ଭବ !
ଚିତ୍ତର ବିଭ୍ରମ ।

ଜୟଦେବ—ହଁ, ବିଭ୍ରମ !
ହୋଇପାରେ ।
କିନ୍ତୁ—
ନାଁ, ତ
ସ୍ପଷ୍ଟ—ଅତି ସ୍ପଷ୍ଟ ସ୍ୱର
ଶ୍ରବଣରେ ଏତେ ଭ୍ରମ ଘଟିବ ମୋହର ?

ପରାଶର—ଅସମ୍ଭବ ନୁହେଁ କବି !
ଅନ୍ତରର ଭାବଧାରା,—
ରୂପ ଧରି
ଥରେ ଥରେ ଦିଏ ଦେଖା,
ସ୍ୱପ୍ନ ବାଜି ସମ ।
ଆଜ କିଛି ନୁହେଁ । ଭ୍ରମ !

ଜୟଦେବ—ଭ୍ରମ ! ହୋଇପାରେ ।
ପରାଶର—ଥାଉ ସେ ଅଜ୍ଞାତ କଥା ।
ଉତ୍କଣ୍ଠା ଜାଗଇ ପ୍ରାଣେ,
ଶୁଣିବାକୁ ଅପୂର୍ବ ସଙ୍ଗୀତ;—
ପ୍ରସରନ୍ତୁ ସଦ୍ୟ ଯାହା
ଲେଖନୀରୁ ତବ ।
ଜୟଦେବ—ଶୁଣିବ ? ଶୁଣ ତେବେ ପରାଶର !
କୃଷ୍ଣ—[ନେପଥ୍ୟେ ଗାଇଲେ)
ରାଧାବଦନ ବିଲୋକନ ବିକଶିତ···ଇତ୍ୟାଦି
ଜୟଦେବ—(ଉଠି) ଶୁଣୁଛ ! ଶୁଣୁଛ ତ ପରାଶର ?
ଏବେ ମଧ୍ୟ କହ ମୋର
ଚିତ୍ତ ଭ୍ରମ ବୋଲି ?
ଶୁଣିଲ ତ ଏବେ ? କିଏ ଗାଏ
ରଚନାର ଅନ୍ୟ ପଦ ମୋର ।
ପରାଶର—କାହିଁ ?
ସ୍ୱର ମାତ୍ର ଶୁଭିଲା ମୋ କର୍ଣ୍ଣେ
ବୁଝିତ ପାରିଲି ନାହିଁ
ବଂଶୀ କି ନୂପୁର ତାହା ?
ଜୟଦେବ—ନା, ନା, ନୁହେଁ ବଂଶୀ,
ନୁହେଁ ସେ ନୂପୁର
ସ୍ପଷ୍ଟ ଶୁଭେ—
ବାଳକର କଣ୍ଠ ପରି ହୁଅଇ ପ୍ରତୀତ;
ଶୁଣ—( ନେପଥ୍ୟରୁ ପୁଣି ଶୁଭିଲା)

ଜୟଦେବ—ଏବେ ମଧ୍ୟ ନ ହେଲା ବିଶ୍ୱାସ ?
ନାଁ, ନାଁ, ଆସ, ଆସ,
ଦେଖେଁ ଯାଇଁ କିଏ ସେହି ଚୋର ।
ଚୋରି କରି ଗାଥା ମୋର
ଶୁଣାଉଛି ମୋତେ ?
ଆସ ପରାଶର ।
ଧର, ଧର, କିଏ ସେ ବାଳକ ( ପୁଣି ନେପଥ୍ୟରୁ ଗୀତ )

ଜୟ—ହେଇ, ଶୁଣ ପୁଣି—
ଆସ, ଏଇ ବାଟେ ଶୁଭେ,
ବାଳକ ! ବାଳକ !

(ଦୌଡ଼ି ଚାଲିଗଲେ—ଗୀତ ମଧ୍ୟ ଦୂର ଦୂରାନ୍ତରରେ ଲୀନ ହୋଇଗଲା)

———

## ତୃତୀୟ ଦୃଶ୍ୟ

( ଗୋଟିଏ ଭିକାରୀ ବୁଢ଼ା ଓ ଗୋଟିଏ ଝିଅ ଏକତାରା ଧରି ମାଗିବାକୁ ବସିଲା, ଗାଉଛି ଶ୍ରୀ ଗୀତଗୋବିନ୍ଦ )

( ଗୀତ )

ରାଧିକା ତବ ବିରହେ, କେଶବ ।
ସ୍ତନବିନିହିତମପିହାର ମୁଦାରମ୍ ॥
ସା ମନୁତେ କୃଶ ତନୁରିବ ଭାରମ୍ ।
ରାଧିକା ତବ ବିରହେ, କେଶବ । ଧ୍ରୁବ ।
ସରସ ମସୃଣମପି ମଲୟଜ ପଙ୍କମ୍
ପଶ୍ୟତି ବିଷମିବ ବପୁଷି ଶଶଙ୍କମ୍
ଶ୍ୱସିତ ପବନ ମନୁପମ ପରିଣାହଂ ।
ମଦନ-ଦହନ ମିବ ବହତି ସଦାହମ୍ ।

ଋଷି ଋଷି କରତ ସଜଳ-କଣ-ଜାଳଂ
ନୟନ-ନଳନମିବ ବିଦଳଚନାଳମ୍
ନୟନବିଷୟମପି କଣଳୟ-ତଳ୍ପଂ
ଗଣୟତି ବିହିତ-ହୁତାଶ-ବିକଳ୍ପମ୍ ।

( ଜଣେ ଯାତ୍ରୀ ଗୁମାସ୍ତା ଓ ତା ସହିତ ଜଣେ ବୃଦ୍ଧ ଯାତ୍ରୀ ଯାତ୍ରୀ ତାନପୁରା ହାତରେ ବଡ଼ ଦାଣ୍ଡରେ ଚାଲି ଯାଉଥିଲେ )

ବୃ: ଯାତ୍ରୀ—( ଯାଉ ଯାଉ ଅଟକି ଗଲେ )

ଗୁମାସ୍ତା—ଚଲ ।

ବୃ: ଯାତ୍ରୀ—ଉଁ ? (ବୁଝି ନ ପାରିବା ପରି )

ଗୁ—ଆରେ ଚଲନା ବେହିପୋ, ଯୋଉଠି, ଯାହା ଦେଖିଲୁ, ପହଞ୍ଚେ ଅଟକିଲୁ ।

ଯା—ଠେରୋ, ଠେରୋ;

ଗୁ—ଆରେ, ଆଗୁ ଠଇରୋ ଠଇରୋ; ଅନ୍ଧଟେ ଗୀତ ଗାଉଚି; ତାକୁ ଶୁଣି ବୋଇଲୁ ଠଇରୋ ଠଇରୋ, ଚଲୋନା; ଡେର୍ ହୋ ଯାତା ହେ; ଫିନ୍ ଜଗବନ୍ଧୁକା ଦର୍ଶନ ନହିଁ ମିଳେଗା ।

ଯା—ଯରସେ ଠେରୋ; ଯାଏଙ୍ଗେ ତୋ ଦରଶନକୁ । ପେହ୍ଲ ଶୁନେ । ଆଚ୍ଛା ଗାନା ଗା ରହା ହେ ବୁଢ଼ା । ହାଁ ରେ ବୁଢ଼ା ! ଯେ ବଡ କୋନ୍ ହେ ରେ ?

ଗୁ—ଆରେ ସେ ପିଲାଟି କଏ ରେ ତୋ ସାଥିରେ ?

ଅନ୍ଧ—[ଗୀତ ବନ୍ଦ କରି] ମୋ ନାତୁଣୀ ହବ । ସେଇ ତ ବୁଢ଼ାର ସାହା ଭରସା ହେଇଚି ବାବା । କିଛି ବୁଢ଼ାଟାକୁ ଦୟାକର ଶେଠଜୀ ।

ଯାତ୍ରୀ – ବୁଢ଼ା କ୍ୟା ଦଢ଼ା ଜୀ ।

ଗୁ – ଯେ ଲଡ଼କା ବୁଢ଼ା ଜା ନାତୁଣୀ; ବୁଢ଼ାକୁ ରାସ୍ତା ଦଖଲାତା ହେ ।

ଯାତ୍ରୀ – ୟେ କ୍ୟା ଗା ରହା ହେ ବୁଢ଼ା ?

ବୁ – ସେ ଖେଦା କଅଣରେ ପିଲା ?

ପି – ଗୀତଗୋବିନ୍ଦ ଖେଦା ।

ଯା – କ୍ୟା ନାମ ?

ବୁ – ଗୀତଗୋବିନ୍ଦ ।

ଯା – ଗାଓ ଗାଓ ।

ବୁଢ଼ା – ଦେ ପଦ କହିଦେ ଲେ ମାଆ !

ପିଲା – [ ପଢ଼ି ଦେଲା ଦୁଇଧାଡ଼ି ]

ଅନ୍ଧ – ହଁ, ମନ ପଡ଼ିଲା । ଗା, ସାଙ୍ଗରେ ମୋର ।

ଅନ୍ଧ ଓ ନାତୁଣୀ – [ ଗାଇଲେ ]

( ମଝିରେ ମଝିରେ ବୁଢ଼ା ଝୁଣ୍ଟି ଯାଉଥାଏ ଓ ବାଳିକା କହି ଦେଉଥାଏ )

ଯାତ୍ରୀ – ରଚନା ଯେସା ସୁରତ; ଐସା ସୁମଧୁର । ହରିଗୁନ ଗା ରହା ହୈ ଲଡ଼କୀ । ଏ ଜୀ ପୁଛୁଁଯେ ତୋ କବି କୋନ୍ ହୈ ।

ବୁ – ହାମକୁ ମାଲୁମ ହେ । କହ, ପୁରୀକେ ଦେହାତମେ ରହନେବାଲେ ଏକ ବ୍ରାହ୍ମଣ ପଣ୍ଡିତ ହୈ ।

ଯା – ଉଡ଼ଣ୍ୟାନା କହ ?

ବୁ – ଜରୁର ।

ଯା – ହମ ଅଏସା ମାଲୁମ ହୋତା ହୈ ନାଁ !

ଗୁ – ଅରେ ବେକୁଫତୋ ! ମାଲିକନେଦେବ ରେ ! ଯେ ଆଇଲା ଆମ

ଓଡ଼ିଶାକୁ ସେ ବୋଇଲ୍ମ ମୋର ମୁଲାଏ ! ବେଷ୍ଟପୋ ସମୁଦ୍ରଠାକୁ ମୋର ବୋଲ କହ ମ ।

ସ୍ୱ: ଯାତ୍ରୀ—କ୍ୟା ବୋଲ୍ମ ଗୁମାସ୍ତା ଜୀ ! ଏେ ହିନ୍ଦ ନହିଁ ?

ଗୁ—ନାହିଁ, ନାହିଁ, ଏେ ହିନ୍ଦ, ବଙ୍ଗଲ, ତେଲୁଗୁ—କୋଇନାହିଁ; ପଣ୍ଡିତ ଜୀ'ନେ ଲିଖା ହୈନା—ସଂସ୍କୃତ ହେ ।

ଯା—ଇତନା ସରଲ ! ମହାପଣ୍ଡିତ ହୋଙ୍ଗେ । ଇସ୍‌ବଦା ହୋତାହେ କି ଥୋଡ଼ା ହାମ୍ ଭି ଶିଖଲେଁ । ଜଗନ୍ନାଥ ଦେଶକା କବିନେ କୈସା ସରଲ ସଂସ୍କୃତମେ ଗାନା ଲିଖା । ଏେ କ୍ୟା ରାଗ ହେ ଜି ।

ଗୁ—ଅପ୍ରତ ପ୍ରସ୍ତାବ ହେ ! ସୁର୍ ବତାଇଏ ନା ।

ଯା—ଯୈସେ ମାଲୁମ ହୋତା, ଏେ କୋଇ ହାମଲୋକକା ଦେଶକା ଏ୍ଥାନେ ହିନ୍ଦୁସ୍ଥାନୀ ରାଗ ରାଗନୀ ନହିଁ । ସାୟତ—

ଗୁ—ହାଁ, ହାଁ, ଏେ ହାମ୍ ଲୋକକା ଦେଶକା ରାଗିଣୀ ।

ଯା—ପୁଛିଏେ ନା ବୁଢ଼ାକୁ—

ଗୁ—ହୁଁଃ ସେ କି ଜାଣେ ରାଗ ରାଗିଣୀ ? ହଇରେ ପିଲା ତୁ ଜାଣୁ ?

ପିଲା—କଅଣ ଆଜ୍ଞା ?

ଗୁ—ଏ ଗୀତର କି ରାଗ ? ଯେ'ଡ଼ା ତୋର ଜାଣେ ?

ପିଲା—( ପୃଷ୍ଠା ଲେଉଟାଇ ) କଅଣ ଲେଖା ହୋଇଛି—ଏଇଠି ଗୀତ ଉପରେ ତ—

ଦେଶାଖ୍ୟ ରାଗ, ଏକତାଳୀ ତାଳାଭ୍ୟାଂ ଗୀୟତେ

ଯାତ୍ରୀ—କ୍ୟା କହା, ଗାନାକା ରାଗ ଲିଖା ହୁଆ ହୈ ? କ୍ୟା ରାଗ ?

ଗୁ—(ଝଟକି ଦେଇ) ରାଗ ଦକ୍ଷିଣ ଲଙ୍କା ମରିଚ ?

ଚିଡ଼ି ଧୃଷ୍ଟ ଲେ ଖିଲ୍ ଆଜ ଥରେ ।

ପିଲ—ଦେଶାଖ୍ୟ ରାଗ ଏକତାଳୀ ତାଳାଭ୍ୟଂ –

ଗୁ—ହିଁ,ହିଁ, ଦେଶାଖ୍ୟରାଗ ଏକତାଳୀ ତାଳ – (ତାଳଦେଇ ଗାଇଲେ)

"ରାମାରେ ଏକାଳେ ଘନ ଘୋଟିଲ" –

ଯା—ହାଁ । ଯେ ଆପଲୋକକା ତରଙ୍ଗକା ଗାୟକୀ ଶୈଳୀ ହୋଗା, ଗାଓ, ଗାଓ ବେଟୀ !

ଗୁ – ଆରେ, ଶୁଣିଲ ତ ଗୁଲ ଭଲ, ବେଙ୍ଗପୋ ଘଡ଼ିଏ ବକର ବକର କଲଣି ।

ଯା – ଗାଓ ତ ବେଟୀ ।

ଗୁ – ଆରେ ଆଜ ପଦେ ଗାଇଦେ ରେ ପିଲା !

ଯା – ଦୋନୋ ଏକ୍ ସାଥ ଗାଓ; ବହୁତ ଆଚ୍ଛା ଲଗତା ହେ ।

( ବୁଢ଼ା ଓ ବାଳକା ପୁଣି ଗାଇଲେ )

ଗୁ – ଅବ ଚଲେ, କୁଛ ଦେନେକୋ ଗୁହୋ ତୋ ବୁଢ଼ାକୁ ଦେ ଦୋ

ଯା – ଯସ୍ ରହୋ ଗୁମାସ୍ତା ଜୀ ! ଐସା ମିଠା ଗାନା ଅଉର ଐସା ସରଲ ଭାଷା ଗ୍ରେଡ଼କେ କୈସେ ଯାଉଁ ? ( ହସି ) ଅଓର ଦୋ ଘର ଚଲନ, ଯେତା ଶୁନତା ହୁଁ ଅଓର ଶୁନ୍‌ନେକୋ ଜୀ ଗୁହ ତା ହେ,ଏ ଲିଖ୍‌ଖା ଦେଖ ସକେଙ୍ଗେ ?

ଗୁ – ହାଁ, ସୌକ୍‌ସେ – , ମଗର ଆପ – ଆଚ୍ଛା ଦେଖି ରେ ପିଲା ସେ ଖେଦା –

(ପିଲା ଖେଦା ଦେଲା ଗୁମାସ୍ତାକୁ । ଗୁମାସ୍ତା ଦେଖାଇଲା, ଯାତ୍ରୀ ଦେଖିବା ବେଳକୁ ଜଣେ ବଙ୍ଗାଳୀ ଯାତ୍ରୀ ଆସି ପହଞ୍ଚିଲା ]

ବ: ଯାତ୍ରୀ – ଓଟା କ ମଶାୟ !

ଗୁ – ପୁଁଥି ! ପୁଁଥି ! ଗୀତଗୋବିନ୍ଦ ପୁଁଥି ।

ବ: ଯାତ୍ରୀ – ଉଡ଼ିୟା କାଣା, ଉଡ଼ିଆ ଅକ୍ଷର, ନାଁ ? ଦେଖି ।

ଗୁ—ହାଁ ଦେଖୁନ୍ ନା ।

ବ:ଯାତ୍ରୀ—ଏତେ ଆବାର ଅକ୍ଷର କୋଇ ? କାଲି କୋଇ ?

ଗୁମା—(ହସି) କାଳି, କାଳି କ ହବେ ?

ବ:ଯାତ୍ରୀ—ତବେ, ଅକ୍ଷର ଦେଖା ଯାଚ୍ଛେନା ଯେ ! ଦାଗେର ମତନ କ ଖୋଦାଇ ହୟେଛେ ଯେନ ।

ଗୁମାସ୍ତା—କେନ୍, ବେଶ ପରିଷ୍କାର ଅକ୍ଷର । କାଳି କ ହବେ ?

ବ: ଯାତ୍ରୀ—ଆବାର, ଆମାଦେର ଦେଶେ ଏଇ ରକମ୍ ଲିଖା ହୟ ତାଲ ପାତାୟ; କିନ୍ତୁ ଶରେର କଲମ ହଏ, କାଳି ହଏ ।

ଗୁମାସ୍ତା—(ହସି ) ନା, ନା, ଲିଖନ—ଲେଖନ, ଲୁହାର ତିଆରି, [ପିଲାକୁ] ଅଛି କରେ ତୋର ?

ପିଲା—କଅଣ ?

ଗୁ—ଲେଖନ ଅଛି ପାଖରେ ?

ଅନ୍ଧ—ହଁ ଥିବ, ନାତୁଣୀ ମୋର ଲେଖେ ଯେ, ଦେଖା ଲୋ ଝିଅ ! ଲେଖନ କଅଣ ଦେଖିନାଁ ଯେ ଦେଖିବ ?

ଗୁ—ଆରେ, ତାଙ୍କର ସବୁ ତାଳପତ୍ର ଉପରେ କଅଣ ଶର କଲମରେ କାଳି ବୁଡ଼େଇ ଲେଖନ୍ତି, ଲେଖନ ନାହିଁ ।

ପି—[ଲେଖନ କାଢ଼ି] ଦେଇଛି !

ଗୁମାସ୍ତା – (ଅଣି ଦେଖାଇଲା)

ବ:ଯାତ୍ରୀ—ବାଃ, ଏତେ କେମନ କରେ ଲିଖା ଯାୟ ?

ଗୁ—ଟିପ ଠାଣ ହେଲେ ଯାଇ ହବ । ଏ କାଠିକର ପାଠ, ମାଟିବଂଶ ଅବଧାନଙ୍କ ଗୁଣ୍ଠ ନ ବାଜଲେ, ଲେଖନ ଧରିବା ମିଛ ।

ହ୍ଵ:ଯାତ୍ରୀ—ବାଃ, ବଡ଼ ଶକ୍ତ ।

ବ:ଯାତ୍ରୀ—କ ଲିଖା ହୟେଛେ ଏତେ ? ପଡ଼ତେ ପାରେନ୍ ?

ଗୁ—ବଲରାମ ନାଁ । ଗୀତଗୋବିନ୍ଦ । ଏଇ ଆମାଦେର ଦେଶେର ଏକ ଭକ୍ତ ପଣ୍ଡିତେର ରଚନା ।

ବ:ଯାତ୍ରୀ—ପଢ଼ନ୍ ଦେଖି ।

ଗୁ—ଓଇ ମେୟେଟା ପଡ଼ବେ ଶୁନ୍‌ନ ନାଁ । ପଢ଼ିବୁଟିରେ ପିଲା ।
　　ନେ ତୋ ଖେଦା ନେ । ଗା, ଦୁଇ ପଦ ଗା ତୋ
　　ଯେ'ଗା ସାଥିରେ ।

ପିଲ—( ଖେଦା ନେଇ ଓ ଦୁହେଁ ଗାଇଲେ )

ବ:ଯାତ୍ରୀ—ସୁନ୍ଦର, ସୁନ୍ଦର ରଚନା, ସୁର୍‌ଟି ତ ବେଶ୍ ମିଷ୍ଟି !
　　ଆପନାଦେର ଦେଶୀ ସୁର୍ ନା ? ଆମଦେର୍ ଦେଶେ ତ
　　ଏମନ ସୁରେର ପ୍ରଚଲନ ନେଇ ।

ହି:ଯାତ୍ରୀ—ୟେ ଉଡ଼ିଶ୍ୟାକା ଚଲନ ସାଗ ରାଗିଣୀ ହେ ବାବୁଜୀ, ଆପ
　　ବଙ୍ଗାଲୀ ହେ ନ ? ବଙ୍ଗାଲୀ ଗାନାକା ସୁର୍ ହାମ ଲୋକକା
　　ହିନ୍ଦୁସ୍ଥାନୀ ରାଗସେ ଗାୟା ଯାତା ହେ । ଅଏସା ଗାନା
　　ଇଧର ପ୍ରଚଲନ ହେ । ୟେ ସ୍ୱତନ୍ତ୍ର ।

ଗୁ—ହଁ ଏ ଆମର ଖାଣ୍ଟି ଓଡ଼ିଶୀ ସ୍ୱର ।

ବ:ଯାତ୍ରୀ—କେମନ୍ ସରଲ୍ । ଆର ସୁର୍‌ଟି ଯେନ ଖୁବ୍ ମର୍ମସ୍ପର୍ଶୀ ।
　　ଏଇ ଦେଶର କବି ଲିଖେଛେ ?

ଗୁ—କଣ୍ଟୟ—ଜଗନ୍ନାଥେର ଦେଶ୍ ! ବୁଝ୍‌ଲେ ବାବୁ, ସମସ୍ତ ସେଇ
　　ରକମ୍ ବଟେ । ଶ୍ରୀମନ୍ଦିର ଦେଖେଛେନ ତ ? ଏତ ବଡ଼
　　ମନ୍ଦିର ଆର କୋଥାୟ ଆଛେ ?

ବ:ଯାତ୍ରୀ—ଏ ଯେ ଜଗବନ୍ଧୁର ମନ୍ଦିର, ବଡ଼ ଦେଉଳ ବଲେ ନାଁ,
　　ଏ ମନ୍ଦିର କେ ?

ଗୁ—ହାଁ, ହାଁ, ଆର ଭୁବନେଶ୍ୱର ଦେଖନନି ବୋଧହୁଏ ।
　　ଦେଖେ ଚକ୍ଷୁ ସ୍ଥିର୍ ହଏ ଯାବେ ଆପନର । ଅଦ୍ଭୁତ
　　କାରୁକାର୍ଯ୍ୟ ! ଜଗନ୍ନାଥେର ଦେଶ୍ । ଏଖାନେ

ସବଇ ବଡ଼ । ସକଲ ବଚିତ୍ର । ଏଇ ଦେଶେର କବି, କାରଗର, ପଣ୍ଡିତ ସବଇ ବଡ଼ । ଜଗବନ୍ଧୁ ଏଇଖାନେ ଥାକେନ୍ ତୁ ନା !

ବ:ଯାତ୍ରୀ—ଗାଇଡ଼ଟେ ବଲୁନ୍ ହାଁ, ବୁଡ଼ୋକେ । ଆର ତ ଦୁଏକ ଚରନ୍ । ଶୁନ ।

ଖ:ଯାତ୍ରୀ—ହାଁ, ହାଁ, କହିୟେ କହିୟେ ।

ଗୁ—ଆରେ, ଉନ୍‌ଲୋକ ଯେ କ୍ୟା ଶୁନୋଗେ ଜୀ ? ଆପ ଶିଖ୍‌ନେକା ଇରାଦା କରତେ ହେଁ ନା; ଚଲିୟେ ମନ୍ଦରମେ । ଦେର୍ ହୋଗୟା, ସାୟଂକାଳ ଆପନେ ପତ୍ନୀକେ ସାଥ୍ ଗୀତ-ଗୋବିନ୍ଦ ଗାତେ ହୋଙ୍ଗେ ।

ଖ:ଯାତ୍ରୀ—କାହାଁ ? ମନ୍ଦର ମେ ? କବି କ୍ୟା ଇହାଁଭି ରହେତେ ହେଁ ?

ବ:ଯାତ୍ରୀ—କବି ଏଇଖାନେ ? ମନ୍ଦରେ ଓଁର ଦେଖା ପାବ ?

ଗୁ—ହାଁ, ଏଇ ଦେଶର୍ ଲୋକ୍ ଉନି । ଏଇଖାନେ ଥାକେନ୍ । ଓର ଜୀବନେର ଅନେକ ବଚିତ୍ର କଥା ଆଛେ । ଶୁନ୍‌ବେନ୍ ? ବଲବ । ଆପନି ମନ୍ଦରେ ଯାବେନ ତ ? ଚଲୁନ୍ ରାସ୍ତାୟ ବଲେ ଯାଚ୍ଛି ।

ବ:ଯାତ୍ରୀ—ଅଚ୍ଛା ।

ଖ:ଯାତ୍ରୀ—ଚଲିୟେ ଗୁମାସ୍ତା ଜୀ, ଦେର୍ ହୋ ଯାଏଗା ଛୋ ଫିନ୍ କବି ସେ—

ଗୁ—ଚଲିୟେ ।

ବୁଢ଼ା—ମତେ କଣ୍ଟୁ ମିଳିଯାଉ ବାପା ।

ଗୁ—ହଁ, ହଁ, ଏ ବୁଢ଼ାକୁ କୁଛ୍—

ଖ:ଯାତ୍ରୀ—ହାଁ, ହାଁ, ହମ ଗୁନ୍ ଶୁନାୟା, ପବିତ୍ର ଗୀତଗୋବିନ୍ଦ । ଜରୁର୍ ଉନ୍‌କୋ ମିଲେଗା, ଯୋ ହାମାର ଖର୍‌ମେ ହେ । (ଟଙ୍କାଟିଏ କାଢ଼ି ଦେଇକରୁ ଦେଲେ)

ବୁଢ଼ା—ଭଗବାନ ମଙ୍ଗଳ କରନ୍ତୁ ବାବା !

ବ:ଯାତ୍ରୀ—(ବହୁତ କଉଡ଼ି ଦେଲେ)

ବୁଢ଼ା—ଜଗନ୍ନାଥ ବଢ଼ନ୍ତି କରନ୍ତୁ ତୁମର ।

(ଅନ୍ଧ ଓ ନାଚୁଣୀ ପୁଣି ଗାଇଲେ ଗୀତ, ଯାତ୍ରୀ ଦୁହେଁ ଓ ଗୁମାସ୍ତା ଯାଉ ଯାଉ)—

ଗୁ—ବୈକୁଣ୍ଠେ ଆଟିକା ଶେଷ ହୟେଛେ ଆପନାର ?

ଯା—ଆଟିକା ୫ ଟିକା ଜାନନ ତ ।

ଗୁ—ପାଣ୍ଡା ଠାକୁରେର କାଛେ ଜଗବନ୍ଧୁର ପ୍ରସାଦ ଜନ୍ୟ—ଏଇ ମାଖନ ମିଶ୍ରୀ, ଛପନ ଭୋଗ, ଶିଘ୍ର ପୁରୀ, କଢ଼ା ମୋହନଭୋଗ, ମିଠା ଖେଚୁଡ଼ି, କରମାବାଇ ଖେଚୁଡ଼ି, ଡାଲଭାତ—ଏଇ ସବ ?

ଯା—ନା, ଓସବ୍—

ଗୁ—ଚଲୁନ୍, ଚଲୁନ୍ । ତାରପର ଆବାର ସୁଫଲ୍ ଆଛେ ।

ବ: ଯା—ସୁଫଲ୍ କ୍ୟା ହେ ଗୁମାସ୍ତାଜୀ ।

ଗୁ—ଦେଖ୍‌ବେ ? ବସୁନ୍ ଓ ମଶାଏ । (ବଙ୍ଗାଳୀ ଯାତ୍ରୀକୁ ବସାଇଲା) ଏଇ ଯାତ୍ରାର ସୁଫଲ୍ । ଦର୍ଶନେ ଏସେଛିଲେନ ନାଁ । ? ଯାତ୍ରା ଭାଲ ହୟ, ସୁଫଲ୍ କର୍‌ଲେ । ଏଇ । ଏଇ ରକମ । (ବେତ ପିଠିରେ ଓ ମୁଣ୍ଡରେ ମାର)

ପଞ୍ଚବେତ୍ ମାରେଁ, ସକଲ ଦୁଃଖ ଟାରେଁ

ଜଗନ୍ନାଥମେ ଛଡ଼ି—ଦ୍ୱାରକାମେ ଛାପ

ଖୁସି ରାଜ ଦର୍ଶନା ଦଣ୍ଡ, ସବ କଟଗଇ ପାପ୍ ।

ଏଇରକମ୍—ଚଲେ । ଅବ୍ ମନ୍ଦିର ଚଲୋ—ସବ୍ ହୋଜାୟଗା ।

———

## ଚତୁର୍ଥ ଦୃଶ୍ୟ

### ସମୁଦ୍ର ତୀର - ପଥ

(ଜୟଦେବ, ପରାଶର – ବାଳକ କୃଷ୍ଣ)

ପରା – କେତେ ପଥ ଯିବା ପଛେ ପଛେ ତା'ର ?

ଜୟ – ନାଁ, ବଡ଼ କ୍ଲାନ୍ତ ମୁହିଁ, ପାଦ ମୋର ନ ଚଳଇ ଆଉ । ଦେଖ, କେଡ଼େ ଦୁଷ୍ଟ ଶିଶୁ, ଦେଖି ଆମ ଅପାରଗପଣ ହସେ ଯାଇ ସାଗର ଉତ୍ସାରେ ।

ବାଳକ – (ହସି) ଜୟଦେବ, ଛି, ଛି, କବି ପରା ତୁମେ ? କି କଳ୍ପଣା କର ବସି ? ଧର ତ ପାରିଲ ନାହିଁ – ସାମାନ୍ୟ ଶିଶୁକୁ ।

ଜୟ – ଶୁଣ ଶୁଣ ପରାଶର, ଉପହାସ କରେମୋତେ ଅଜ୍ଞାନ ବାଳକ, ଯାଉ ପଛେ ପ୍ରାଣ, ଅବଶ୍ୟ ମୁଁ ଧରିବି ଶିଶୁକୁ, ଚାଲ ଚାଲ ସମୁଦ୍ରର କୂଳେ । ଦେଖିବି ମୁଁ କେଡ଼େ ସେ ଚତୁର, କାହିଁ ପଳାଇବ ଲଙ୍ଘି ସାଗରର ବାରି ।

(ଜୟଦେବ ସମୁଦ୍ର କୂଳକୁ ଗଲେ)

ବାଳକ – ( ଜଳରେ ପଶୁ ପଶୁ ଗାଇବାକୁ ଆରମ୍ଭ କଲେ)

ଜୟ – ଦେଖ, ଦେଖ, ପରାଶର ! ପୁଣି ଗାଏ ମୋହର ରଚନା ।
(ଶିଶୁ ପ୍ରତି) ଆରେ, ଆରେ ଅଜ୍ଞାନ ବାଳକ, ଏ କି କରୁ, ଏ କି କରୁ ? ନୁହେଁ ତୋର କ୍ରୀଡ଼ାଭୂମି ତାହା । ଜଳ, ଜଳ ଅତଳ ସାଗର ! ଜୀବନର ମାୟା ଯାଉ ଭୁଲି !

ବାଳକ—( ହସି ହସି ଗୀତ ଗାନ )

ଜୟଦେବ – ପରାଶର !

ଅସମ୍ଭବ ଶିଶୁ !
ଧୋଇ ଯାଉ ଏ ଉଚ୍ଛିଷ୍ଟ
ସମୁଦ୍ର ଜଳେ ।
ଲୁପ୍ତ ହେଉ କବି ଦମ୍ଭ,
ଅତଳ ତରଙ୍ଗେ ।
କ କାର୍ଯ୍ୟ
ସାଇତି ରଖି ଉଚ୍ଛିଷ୍ଟ ରଚନା ?
( ପୋଥି ସମୁଦ୍ର ଗର୍ଭରେ ଫିଙ୍ଗି ଦେଲେ )

ପରାଶର—ଆହା, ଆହା
କ କଲ କ କଲ କବି
ପାଣ୍ଡୁଲିପି ଦେଲ ଫିଙ୍ଗି
ସାଗର ତରଙ୍ଗେ ?

ଜୟ—ଖାଲି ନୁହେଁ ତାହା
ଉଚ୍ଛିଷ୍ଟ ଭୋଗି ଜୀବନେ
ନାହିଁ ପ୍ରୟୋଜନ
ଏ କବିତ୍ୱ ଯାଉ ଭାସି
ଅଥଳ ଅମ୍ବୁଲେ
ପାଣ୍ଡୁଲିପି ତୁଲେ
ହେଉ ଅଜ ଜୟଦେବ ସଲିଳ ସମାଧି
( ଝାଂପ ଦେବାକୁ ଉଦ୍ୟତ )

ପଦ୍ମ— ( ବାଧାଦେଇ ) ଜୟଦେବ, ଜୟଦେବ !

ବାଳକ — [ ଜଳମଧ୍ୟରୁ ] କ କର, କ କର କବ !

ଏକ କଳ୍ପ ଭକ୍ତ

ହୃତପିଣ୍ଡ ମୋ ଦେଲଫିଙ୍ଗି

ସାଗର ବାଲିରେ ?

(ପାଣ୍ଡୁଲିପି ଧରି ଜଳ ମଧ୍ୟରେ ଥାଇ ) ଘୁଏଁ ଘୁଏଁ ଦେଉଛୁ

ମୁଁ ଧରା ।

ନଅ ତବ ପାଣ୍ଡୁଲିପି

ପବନ ଏ ଶ୍ରୀ ଗୀତଗୋବିନ୍ଦ

ଭକ୍ତ କବ କଲ୍ପନା କୁସୁମେ ଗଢ଼ା ।

ନୁହେଁ ତା ଉଚ୍ଛିଷ୍ଟ

ଆଦରର ଧନ ମୋ'ର ତାହା

ତେଣୁ ଭକ୍ତ କବ

ତୁମ୍ଭ ଲେଖା ପଂକ୍ତି ଗୋଟି କେତେ

ସ୍ମରଣ ମୁଁ ରଖି

ରଟୁ ଥାଏ ଦବାନଶି

ହରଷ ଅନ୍ତରେ

ଯେନ ତବ ପାଣ୍ଡୁଲିପି

ମେଲ ଆଖି ଦେଖ

ସମ୍ମୁଖେ ମୁଁ ଉକତ ଉକାଶ ।

ଜୟ — ଏ କ ଚୂଣ ଦେଖୁଛି ନୟନେ ?

ପଦ୍ମ-ନଳୀନ-ନୟନ

ଶିଖଣ୍ଡ ମଣ୍ଡନ !

ଗଳେ ବନମାଳ,

କରେ ବଂଶୀ !

ଶ୍ୟାମ କଳେବର !
ଜାଗ୍ରତ ନାଁ ନିଦ୍ରିତ ମୁଁ ?
ସ୍ୱପ୍ନ ନାଁ ସତ୍ୟ

ଶ୍ରୀକୃଷ୍ଣ—ଯେନ ଭକ୍ତ ପାଣ୍ଡୁଲିପି ତବ

ଜୟ—ପାଣ୍ଡୁଲିପି ମମ ?
ଶ୍ରୀହସ୍ତେ ଯା କରଛ ପୂରଣ ହେନେ ?
ହେ ଚିର ବାଞ୍ଛିତ,
ସଫଳ ମୋ ଶ୍ରମ ତେବେ—
ସାର୍ଥକ ଜନମ, ଏତେ ଭାଗ୍ୟ ସମ୍ଭବ କି ମୋର ?
ଧନ୍ୟ ହେଲି ଆଜ
ଗୋବିନ୍ଦ ଶ୍ରୀପଦେ ଅରପି ମୁଁ
ଶ୍ରୀ ଗୀତଗୋବିନ୍ଦ ପ୍ରସାଦ ନୈବେଦ୍ୟ
ଜୟ ଜୟ ମଦନ ମୋହନ

(ଦଶାବତାର ସନ୍ଦର୍ଶନ)

ପ୍ରଳୟ ପୟୋଧିଜଳେ ଧୃତ ବାନସି ବେଦଂ
ବିହିତ ବହିତ୍ର ଚରିତ୍ର ମଖେଦଂ
କେଶବ ଧୃତ ! ମୀନ ଶରୀର, ଜୟ ଜଗଦୀଶ ହରେ ॥
କ୍ଷିତି ରତି ବିପୁଳତରେ ତବ ତିଷ୍ଠତି ପୃଷ୍ଠେ
ଧରଣୀ ଧରଣ କିଣ ଚକ୍ର ଗରିଷ୍ଠେ
କେଶବ ଧୃତ ! କଚ୍ଛପ ରୂପ, ଜୟ ଜଗଦୀଶ ହରେ ॥
ବସତି ଦଶନ ଶିଖରେ ଧରଣୀ ତବ ଲଗ୍ନା
ଶଶିନି କଳଙ୍କ କଳେବ ନିମଗ୍ନା
କେଶବ ଧୃତ ! ଶୂକର ରୂପ, ଜୟ ଜଗଦୀଶ ହରେ ॥

ତବ କର କମଳ ବରେ ନଖ ମଦ୍ଭୁତ ଶୃଙ୍ଗ
ଦଳିତ ହିରଣ୍ୟ କଶିପୁ ତନୁ ଭୃଙ୍ଗ
କେଶବ ଧୃତ ! ନରହରି ରୂପ, ଜୟ ଜଗଦୀଶ ହରେ ॥

ଛଳୟସି ବିକ୍ରମଣେ ବଳି ମଦ୍ଭୁତ ବାମନ
ପଦ-ନଖ-ନୀରଜନିତ ଜନ ପାବନ
କେଶବ ଧୃତ ! ବାମନ ରୂପ, ଜୟ ଜଗଦୀଶ ହରେ ॥

କ୍ଷତ୍ରିୟ ରୁଧିରମୟେ ଜଗଦପଗତ ପାପଂ
ସ୍ନପୟସି ପୟସି ଶମିତ ଭବ ତାପଂ
କେଶବ ଧୃତ ! ଭୃଗୁପତି ରୂପ, ଜୟ ଜଗଦୀଶ ହରେ ॥

ବିତରସି ଦିକ୍ଷୁ ରଣେ ଦିକ୍‌ପତି କମନୀୟଂ
ଦଶ ମୁଖ ମୌଳି ବଳିଂ ରମଣୀୟଂ
କେଶବ ଧୃତ ! ରାମ ଶରୀର, ଜୟ ଜଗଦୀଶ ହରେ ॥

ବହସି ବପୁସି ବିଷଦେ ବସନଂ ଜଳଦାଭଂ
ହଳ ହତି ଭୀତି ମିଳିତ ଯମୁନାଭଂ
କେଶବ ଧୃତ ! ହଳଧର ରୂପ, ଜୟ ଜଗଦୀଶ ହରେ ॥

ନିନ୍ଦସି ଯଜ୍ଞ ବିଧେରହହ ଶ୍ରୁତିଜାତଂ
ସଦୟ ହୃଦୟ ଦର୍ଶିତ ପଶୁଘାତଂ
କେଶବ ଧୃତ ! ବୁଦ୍ଧ ଶରୀର, ଜୟ ଜଗଦୀଶ ହରେ ॥

ମ୍ଲେଚ୍ଛ ନିବହ ନିଧନେ କଳୟସି କରବାଳଂ
ଧୂମକେତୁ ମିବ କିମପି କରାଳଂ
କେଶବ ଧୃତ ! କଲ୍‌କି ଶରୀର, ଜୟ ଜଗଦୀଶ ହରେ ॥

ଶ୍ରୀ ଜୟଦେବ କବେରିଦଂ ମୁଦିତଂ ମୁଦାରଂ
ଶୃଣ୍ୱ ଶୁଭଦଂ ସୁଖଦଂ ଭବସାରଂ
କେଶବ ଧୃତ ! ଦଶବିଧ ରୂପ, ଜୟ ଜଗଦୀଶ ହରେ ॥
(ଜୟଦେବ ପ୍ରଣାମ କଲେ)

## —ଚତୁର୍ଥ ଅଙ୍କ—

### ପ୍ରଥମ ଦୃଶ୍ୟ

(ଜୟଦେବଙ୍କ କୁଟୀର ଦ୍ୱାର ଉନ୍ମୁକ୍ତ-ରାଧା ମାଧବଙ୍କ ମୂର୍ତ୍ତି ଦେଖାଯାଉ-ଥିଲା, ପଦ୍ମା ଆରତୀ ଧରି ଠିଆ ହୋଇଥିଲେ । ଜୟଦେବ ପୂଜା ବଢ଼ାଉ ଥିଲେ; ଉଭୟେ ଗୀତଗୋବିନ୍ଦ ଗାଉଥିଲେ)

ରତି ସୁଖସାରେ, ଗତମଭିସାରେ······ଇତ୍ୟାଦି

(ଗୀତ ମଧ୍ୟରେ ବୁଢ଼ୀ ବାଇଗଣବାଲି ବାଇଗଣ ନେଇ ଆସିଛି)

ବୁଢ଼ୀ—ବାଇଗଣ ରଖ ବାପା । (ବୋଝ ମୁଣ୍ଡରୁ ଓହ୍ଲାଇ ରଖିଲା, ଗଳବସ୍ତ୍ର ହୋଇ ଦିଅଁଙ୍କୁ ପ୍ରଣାମ କରି, ଏକମନରେ ଗୀତ-ଗୋବିନ୍ଦ ଶୁଣୁଥାଏ ।)

ପରାଶର—(ଗଙ୍ଗାଷ୍ଟକ ପଢ଼ି, ହାତରେ ପାଣି ଢାଳଟିଏ ନେଇ ଓଦା-ଲୁଗାରେ ଫେରୁଛନ୍ତି ଗାଧୋଇ କରି) ଆଲୋ ମାଉସୀ ! କେତେବେଳୁ ଆସି ବସି ରହିଛୁ ! ମୋର ଟିକିଏ ମଠ ହୋଇଗଲା ଆଜ । କଅଣ ଆଣିଚୁ ?

ବୁଢ଼ୀ—ସେଇ ବାଇଗଣ ଆଉ ଶାଗ ତ ଲୋ ବାପା ! ଆଉ କଅଣ ଆଣିବ ? ଅଗ୍ରଏ ତ ବାଡ଼ି, ସେଇଥିରୁ ଶାଗ ଟୋକରାଟିଏ କରନ୍ତୁ । ବାଇଗଣ ଗଣ୍ଡିଏ ଗଣ୍ଡିଏ ଫଳୁଚି ।

ପଦ୍ମ—ହଉ, ହଉ, ବାଡ଼ିପଟକୁ ଆସ । ପାଞ୍ଚ ଦୁଆର ଗଲେ ସିନା କଣା ବିକା କରିବୁ । ବହୁତ ବେଳଯାଏ ଏଠି ବସେଇ ରଖିଲଣି ମୁଁ ଖଲଟାରେ ।

ବୁଢ଼ୀ—ହଁ, ଖାଲଟାରେ କଅଣ ଲୋ ବାପା । ଯୋଉ ଘଡ଼ିକ ପହରକ ଏଠି ବସେଁ, ସେଇତକ ଜାଣି ଜନମ ଭିତରେ ସାର୍ଥ । ସବୁବେଳେ ତ ପେଟଚିନ୍ତା, ଦୁଃଖୀ ଲୋକ । ଘଡ଼ିଏ ହେଲେ ବାଙ୍କ ନାଆଁ ଶୁଣିଥାଏଁ ।

ପଦ୍ମ—କଅଣ ଗୀତଗୋବିନ୍ଦ ଶୁଣୁଥିଲୁ ?

ବୁଢ଼ୀ—ହଁ ଲୋ ବାପା, ଗୀତ ଶୁଣୁଥିଲି, ଆଉ ଗୋବିନ୍ଦ କୋଉଠି, ମୁଁ କୋଉଠି ? ଗୀତଗୋବିନ୍ଦ ଶୁଣିବ ଏଇ ପାପ କାନରେ ?

ପଦ୍ମ—କେତେ ତ ଶୁଣୁଚୁ ଆସି, କିଛି ହେଉ ରଖିଲୁଣି ଭଲା ?

ବୁଢ଼ୀ—ହଁ, ହେଉ ରଖିବ ? ବୁଢ଼ୀ ମଣିଷ ! ଗୀତ ଶୁଣୁ ଶୁଣୁ ତା ମନକୁ କାଁ ଖାଁ ଏଠୁ ସେଠୁ ପଦେ ଅଧେ ଯାହା ହେଉ ରହି ରହି ଯାଉଚି ।

ପଦ୍ମ—ହଉ, ଆସ ଆସ, ତମକୁ ଆଗେ ବିଦା କରିଦିଏଁ ।

ଜୟଦେବ—[ଆରମ୍ଭ ଆରମ୍ଭ କଲେ]

(ବୁଢ଼ୀ ଓ ପଦ୍ମ ଘରଭିତର ଚାଲିଗଲେ, ପଦ୍ମା ଗଳବସ୍ତ୍ର ହୋଇ ପ୍ରଣାମ କଲେ ବାଙ୍କୁ ।)

———

## ଦ୍ୱିତୀୟ ଦୃଶ୍ୟ

### କେନ୍ଦୁଲି ବାଣ୍ଡ

(ପରାଶର ପତ୍ନୀ କାଖରେ ଗୋଟିଏ ପାଣି ମାଠିଆ ନେଇ ଯାଉଥିଲେ ଘରକୁ, ହଠାତ୍ ଠିଆ ହୋଇ ଗଲେ—ମନେ ମନେ ଯେମିତି କେତେ କଅଣ ଭାବିଲେ, ଫେର ଆସିଲେ ଅନ୍ୟମନସ୍କ ହୋଇ. ଫେରିବାବେଳକୁ ଦେଖା ହେଲ ବିମଳା ସହିତ)

**ବିମଳା—ଭାଉଜ ! ଘରକୁ ଯାଉ ଯାଉ ଫେର ଆସିଲୁ ବାଟରୁ ?**

ରୋହିଣୀ—[ହତାଶ ଭାବରେ ] ଯାଉଚି—

ବି—ଯାଉଚୁ ? ମୁହଁ ସଞ୍ଜ ହୋଇ ଆସିଲାଣି, ଏତେବେଳେ ଫେ'ରୁ କୁଆଡ଼େ ଯାଉଚୁ ?

ରୋ—ଯାଉଚି ଟିକିଏ ନଈ କୂଳକୁ ।

ବି:—ପାଣି ଆଣି ଏଇନେ ଆସିଲୁଟି ! ଫେ'ରୁ ନଈ କୂଳରେ କଅଣ କାମ ?

ରୋ:—କାମ ? କିଛି ନାଇଁ ଯେ । ଘଡ଼ିଏ ଯାଇ ବସିକରି ଆସିବି ।

ବି:—ତୋର ଏଇ ଯୋଉ ଅଲକ୍ଷଣା କଥା । ଘର ଗୋଟାକର କାମ—କହୁଚି କଅଣ ନା ନଈ କୂଳକୁ ଯିବି । ନଈକି ଯିବାକୁ ବେଳ ମିଳିଲା ତୋ ହେଲେ ? ଚାଲ, ଚାଲ ଘରକୁ ଚାଲ ।

ରୋ:—ନାଇଁ ମ, ଏତେ ବେଗେ ଘରକୁ ଯାଇ କଅଣ କରିବି ? ରନ୍ଧା ନା ବଢ଼ା ?

ରୋ:—ସେଇଦିନୁ ପୁରୁଷମ ଗଲେ ଯେ, ଖବର ନାଇଁ କି ଅନ୍ତର ନାଇଁ । ବିମଳା ! ବଣ ପୋଡ଼ିଗଲେ ସଭିଏଁ ଜାଣନ୍ତି, ମନ ପୋଡ଼ିଗଲେ କିଏ ଜାଣିବ ?

ବା:—କାହିଁକି ମ, ମନ ଯେବେ ଏତେ ଖରାପ ହଉଚି, ଚାଲନ୍ତୁ ପୁରୁଷୋତ୍ତମ ଯିବୁ ।

ଗୋ:—କେମିତି ଯିବ ?

ବା:—କାହିଁକି ଚାଲିକରି । ଗୋଡ଼ ହ'ଟା ତ ଅଛି ।

ଗୋ:—ଗୋଡ଼ କଅଣ ଆଉ ନାଇଁ ବୋଲି ମୁଁ କହୁଚି ? ନାଆଁ ଲଗା ପାଇଚି ଜନମ ମରା ପାଇଚି ଲୋ ବମଳୀ ! ଏକୁଟିଆ କେମନ୍ତେ ଯିବି ?

ବା:—କାହିଁକି, ମୁଁ ଯିବି । ଭାଇନାଙ୍କୁ ଦେଖି ଆସିବା । ଦିନ କେଇଟା ରହିଲୁ, ନ ଆ ଭାଉଜ ମତେ ଗୋଟେ ମାୟା ଲଗେଇ ଦେଇଚି ଲୋ ଭାଉଜ ! ଆଉ ଦିନ ତିନିଟା ତ ବୁଡ଼ି ରହିଲ, କେତେ ଯାତ୍ରୀ ଆସିବେ । ପୁରୁଷୋତ୍ତମ ଯିବା ଲୋକଙ୍କ ସାଙ୍ଗରେ ତୁ ମୁଁ ଦିହେଁ—

ଗୋ:—ତୁ ସତେ ଯିବୁ, କେଜାଣି !

ବା:—ତୋ ରାଣ ଲୋ ଭାଉଜ ! ମୁଁ ବୋଉକୁ କହି ମଙ୍ଗେଇନେବି । ଦେଖିବୁ ନେଇଁ । ଚାଲ, ଘରକୁ ଚାଲ । ସଞ୍ଜ ଦେଇନୁଁ ଟି ଚଉରା ପାଖେ ?

ଗୋ:—ଆଲୋ ହେ ! ଦେଖିଲୁ ମନେ ନ ଥିଲା ମୋର ।

ବା—ହଁ, କେମିତି ମନେ ରହିବ ? ତୋର ପରା ଘରେ ଛନ ଛନ ବାହାରେ ମନ, କେମିତି ଦେଖିବ କଳା ବଦନ !

ଗୋ:—ଯା, ଯା; ସବୁବେଳେ ତୋର ଖାଲି-

ବା—ଆଉ କଅଣ ତୋ'ର ପରି ମିଛ କଥାରେ ମୁହଁ ଶୁଖେଇ ବସିଥାନ୍ତି ? ଚାଲେ, ଭଗବାନ ହାତ ଗୋଡ଼ ଦେଇଚନ୍ତି, ଦିଅଁ ଦେଖା ହେବ ଦେଉଳ ଦେଖା ହେବ; ଚାଲ ।

(ଦୁହେଁ ଗଲେ ବାହାରେ)

ରଥିଆ — [ଆସି] ହୁଁ, ଆସୁ--ଆଜ ଭୋଗକିଆ ବ ହବ ! ରହ ଲୋ ଖଣ୍ଡାଖାଇ ରୋହ୍ମଣୀ ନାମ, କାନଠାରୁ ଆଜପାଠକ ପଗ ମୋର ପୀଡ଼ା ଯାଇନାହିଁ, ଓଃ ! ଯିବୁ ତ ପୁରସ୍ତମ, ଏକୁଟିଆ କାହିଁକ ? ଯାହାନ୍ତାରୁ ମୁଁ ଆଗରୁ ରଥିଆକୁ ସାଥିରେ ନେଇ ଅଧବାଟିଆ ତାକ ଜଟୀ ବସିବ ଲୋ ' ଚୁଲ, ଚୁଲ, ଛୋ କାନମୋଡ଼ା ଏଥର ଦଉଡ ଛଡ଼େଇ । ସେଠି ତ ଆଉ ଗାଆଁ ନାହିଁ କ ଗଣ୍ଡା ନାହିଁ ! ବାଟକୁ ଚୁ ।       [କଲ୍ବ କଲ୍ବ ପ୍ରସ୍ଥାନ)

---

## ତୃତୀୟ ଦୃଶ୍ୟ

(କୁଟୀର ପଶ୍ଚାତ୍ ଦେଶର ବାଇଗଣ ବାଡ଼, ଚନ୍ଦ୍ରପକ୍ଷ ରାତି—ଶରତ-କାଳ । ଗୋଟିଏ ବାଇଗଣ ବୋଝ ନେଇ ବୁଢ଼ୀଟିଏ ବାଇଗଣ ତୋଳୁଚ । ମଝିରେ ମଝିରେ ଖଣ୍ଡିଆ ଖଣ୍ଡିଆ କରି ଗୀତଗୋବନ୍ଦ ଗାଉଛି, ଶ୍ରୀକୃଷ୍ଣ ଲୁଚ ଲୁଚ ଶୁଣୁଛନ୍ତି)

ବୁଢ଼ୀ (ଗୀତ)—

କାଳୀୟ ବିଷଧର ଗଞ୍ଜନ—ଜନରଞ୍ଜନ
ଯଦୁକୁଳ ନଳୀନ ଦିନେଶ
ଜୟ ଜୟ ଦେବ ହରେ
×       ×       ×
ରାଧିକା ବଦନେ ତବ କେଶବ
ସ୍ତନ ବନ୍ଧହାନପୀଡ଼ାର ମୁଦାରଂ
ସାମନୁଚେ କୃତ ତନୁରବ ଭାରଂ
ସରସ ମସୃଣ ମପି ମଳୟଜପଙ୍କମ୍
ପଶ୍ୟତି ବିଷ ମିବ ବପୁଷି ଶଙ୍କମ୍

(ଗାଇ ଗାଇ ବାଇଗଣ ତୋଳୁ ତୋଳୁ କୁଟୀର ଦ୍ୱାର ପିଟାଇ ଚାଲିଗଲା, ଶ୍ରୀକୃଷ୍ଣ ଜନ୍ମାନବ ତା'ର ଯିବା ପଥକୁ ଚାହିଁ ରହିଲେ) ।

# ଚତୁର୍ଥ ଦୃଶ୍ୟ

## ପୁଣି ବଡ଼ଦାଣ୍ଡ

( ଅନ୍ଧ ପୁରିଆକୁ ବାଟ କଢ଼ାଉଛନ୍ତି ବାଳକବେଶୀ ଶ୍ରୀକୃଷ୍ଣ )

ଶ୍ରୀକୃଷ୍ଣ—ଅହା ହା ! ଅବାଟରେ ଯାଅ ନାହିଁ । ଗୋଡ଼ ଖସିଗଲେ ପଡ଼ିଯିବ ଯେ !

ପୁରିଆ—ହଁ ବାପା, ଟିକିଏ ବାଟ ମନେଇଁ ନିଅ ।

ଶ୍ରୀକୃଷ୍ଣ—ତମକୁ କଅଣ ଜମା ଦିଶୁ ନାହିଁ ?

ପୁରିଆ—ନାହିଁ ବାବା ! ଜମା ଦିଶୁ ନାହିଁ ।

ଶ୍ରୀକୃଷ୍ଣ—ତୁମେ କଅଣ ଜନ୍ମରୁ ଅନ୍ଧ ? କାହିଁ ? ଆଖି ତମର ତ ଫୁଟିଗଲା ପରି ଦିଶୁନାହିଁ । (ଅଖିଆଗେ ଆଙ୍ଗୁଠି ହଲାଇ)

ପୁରିଆ— ଜନ୍ମରୁ ମୁଁ ଅନ୍ଧ ନୁହେଁ ବାବା ! ଏଇ ସ୍ୱର ଦିନ ହେଲା ଏମିତି କେମିତି ହେଲା । ଅହ୍ୱାଇଲା ପୁରସ୍ତମ—ବାଟରେ—

ଶ୍ରୀ—କଅଣ ଜଗନ୍ନାଥ ଦର୍ଶନ କରିବାକୁ ଆସୁଥିଲ ?

ପୁ—ଜଗନ୍ନାଥ, ହଁ ବାବା ! ମୋ ସାଥିରେ ଆଉ ଜଣେ ଥିଲା ଯେ ସେ ଛାଡ଼ିକରି ଚଳେଇଲା, ମୁଁ ଆଉ ଗାଆଁକୁ ବି ଫେରି ପାଇ ପାରିଲି ନାହିଁ । ଆସୁ ଅସୁ ତ ହଠାତ୍ ବାଟରେ ଏମିତି ହେଲା । ଆଖିକି କିଛୁ ଆଉ ଦିଶିଲା ନାହିଁ ।

ଶ୍ରୀ—ତମ ଗାଁ କେଉଁଠି ?

ପୁ—ଗାଆଁ କେନ୍ଦୁଲି ।

ଶ୍ରୀ—କିଛି ଖାଇଚ ?

ପୂ—ନାଇଁ ବାବା ! ଆଜ ଖାଇଲି କଅଣ ? କଏ ହବ ?
ଭୋକରେ ହଂସା ଉଡ଼ିଯାଉଛି ।

ଶ୍ରୀ—ଏଇ ପାଖରେ ତମ ଗାଆଁ ଲୋକ ସବୁ ଅଛନ୍ତି, ଜାଣିନା ?

ପୂ—କଏ ?

ଶ୍ରୀ—ଜୟଦେବଙ୍କୁ ଚହ୍ନିଚ ? ସେ ଆଉ ତାଙ୍କ ସ୍ତ୍ରୀ ପଦ୍ମାବତୀ ।

ପୂ—(ଚମକି) ନାଁ, ନାଁ,—ହଁ ତାଙ୍କୁ ଜାଣିଚ ଯେ, ସେ ତ—

ଶ୍ରୀ—ହଁ, ଏଇଠି ଥାଆନ୍ତି, ତାଙ୍କ ଘରକୁ ଆହୁରି କଏ ଦ'ଜଣ ମାଇପି କୁଣିଆ ଅସିଚନ୍ତି । ତମକୁ ସେଇଠି ପହଞ୍ଚେଇ ଦେବି ।

ପୂ—ନାଁ, ନାଁ, ନାଇଁ ବାପା, ମୁଁ, ମୁଁ, ମୁଁ—

ଶ୍ରୀ—କାହିଁକି ? ତୁମେ ତାଙ୍କ ଗାଆଁ ଲୋକ, ତମକୁ ଦେଖିଲେ ସେମାନେ ତମର ଯତ୍ନ କରିବେ । ଭଲ, ଭଲ ହବ । ଏଠି କୋଉଠି, କେମିତି ରହିବ ?

ପୂ—କୋଉଠି କାହା ପିଣ୍ଡା ପହଣ୍ଡରେ—

ଶ୍ରୀ—ଖାଇନାଆଁ ଯେ କହୁଛ, ସେଠିକି ଗଲେ ତ ଭଲ ହବ । ମୁଁ ତାଙ୍କ ଘରକୁ ବରାବର ଯାଏଁ । ମୁଁ କହିଦେବି । ସେମାନେ ତମକୁ ଖାଇବା ପିଇବାକୁ ଦେଇ, ଭଲରେ ରଖିବେ ।

ପୂ—ନାଇଁ ବାବା ! ମୋତେ ଅଉ କୋଉଠିକି ବାଟ ବତେଇ ଦିଅ, ଭିକ ମାଗିକରି ଖାଇବି—ସେ ଭଲ, ଗାଆଁ ଲୋକଙ୍କୁ ଏ ମୁହଁ ଦେଖେଇ ପାରିବି ନାହିଁ ।

ଶ୍ରୀ—ତମ ମନ, ମୁଁ ତମ ଭଲକୁ କହୁଥିଲି ନାଁ । ଆସ ତେବେ, ହାତ ଧର । ତମକୁ ଗାଇ ଅସେ ?

ପୂ—ନାଇଁ ବାବା ! ଟିକଏ ଟିକଏ ଏମିତି—ପାଠ ପଢୁଥିଲେ ଗୀତ ଗାଉଥାଏ ଟେଅର ବାଉର ପୁଅ ।

ଶ୍ରୀ—ହଁ ଯେମିତ୍ତ ହଉ । ହରି ନାମ ଧରି ମାଗିଲେ ପୁରସ୍ତମରେ ଖାଇବାକୁ ଅଭାବ ହବ ନାହିଁ ! ମୁଁ ଶିଖେଇ ଦଉଚି । ଗାଅ ମୋ ସଙ୍ଗେ । ମୁଁ ଭିକାରୀ ଟୋକାଟିଏ । ବହୁତ ଲୋକ ମତେ ଡାକନ୍ତି ଖାଇବାକୁ, ବାକ ଆଦର ନ ପାଇଲେ ମୁଁ କୋଉଠି ଖାଏ ନାହିଁ । ମୋ ସଙ୍ଗେ ଗାଅ, ଆସ ।

( ହାତ ଧରିଲେ )

—ଗୀତ—

କୃଷ୍ଣ ମୁରାରୀ, ଜନ ଦୁଃଖହାରୀ, କେଶବ ଜୟ ଦଇତାରୀ
ଜୟ ଜଗଧୀଶ ହରେ—ଜୟ ଜଗଧୀଶ ହରେ ।

ଗୃ—ଥରକେ ମନେରହୁ ନାହିଁ ।

ଶ୍ରୀ—ହଉ, ମୋ ସାଙ୍ଗରେ ମିଶେଇ ମିଶେଇ ଗାଅ, ମନେରହି ଯିବ ଯେ, ଗାଅ—

( ଗାଇ ଗାଇ ନେଇଗଲେ )

— — —

## ଅଷ୍ଟମ ଦୃଶ୍ୟ

(ଶ୍ରୀମନ୍ଦିର କଳାଘାଟ ଦ୍ୱାର ଉନ୍ମୁକ୍ତ,ସମ୍ମୁଖରେ ଗରୁଡ଼ ସ୍ତମ୍ଭ, ସ୍ତମ୍ଭ ଗୃହପାଖେ ଧାଡ଼ି ଧାଡ଼ି ଦୀପ ଜଳୁଛି, ବହୁ ଭକ୍ତ କରଯୋଡ଼ି ଦଣ୍ଡାୟମାନ । ଦେବଦାସୀ ନୃତ୍ୟ ହେଉଥିଲା । ଶ୍ରୀ ଜୀଉଙ୍କ ସମ୍ମୁଖରେ ଆରତି ଘେନି ପୂଜାପଣ୍ଡା ଦଣ୍ଡାୟମାନ । )

( ଦେବଦାସୀର ପଲ୍ଲବୀ ସହ ନୃତ୍ୟ । ବାଦ୍ୟକାର ମୃଦଙ୍ଗ ର ପଲ୍ଲବୀ ଉକୁଟି କହୁଥିଲା । ନୃତ୍ୟ ତଦନୁସାରେ ହେଉଥିଲା । ଦକ୍ଷିଣ-ଦ୍ୱାର ବାଟେ ପୁରୀର ମହାରାଜା ପ୍ରବେଶ କଲେ ରତ୍ନସିଂହାସନ ନିକଟକୁ, ହଠାତ୍ ତାଙ୍କର ଦୃଷ୍ଟି ପଡ଼ିଲା ଶ୍ରୀଅଙ୍ଗର ପିନ୍ଧା ଉପରେ । )

ମହାରାଜ　( ବିରକ୍ତ ଓ ବିସ୍ମିତ ହୋଇ ) ନିଯୋଗ ! ବନ୍ଦକର
　　ସେବା । ( ମୁହୂର୍ତ୍ତକେ ରାଜାଦେଶ ପାଳିତ ହେଲା । ମନ୍ଦିର
　　ନୀରବ—ନିସ୍ତବ୍ଧ )

ମହା—କାଲି ଦେଉଳ ମୁଦ ପାଳି କାହାର ଥିଲା ?

ବଡ଼—ମୁଁ ଥିଲି, ମଧୁ ମେକାପ ମୁଦ ଦେଲେ ।

ମହା—ବଡଦାଣ୍ଡ ହାର କିଏ ବଢ଼ାଇଛି ?

ବଡ଼—ମହିମା, ମୁଁ ।

ମହା – ଜଗନ୍ନାଥଙ୍କ ଶ୍ରୀଅଙ୍ଗର ଲାଗି ପିନ୍ଧା ଚିରି ଯାଇଛି କଣ୍ଟାରେ
　　ଫାଡ଼ିଲା ପରି ! ଏ ସବୁ କାହିଁକି ହୋଇଚି, ଶ୍ରୀଅଙ୍ଗରେ
　　ବାଇଗଣ କଣ୍ଟା ଲାଗିଲା କୋଉଠୁ ?

ବଡପଣ୍ଡା – ଆଜ୍ଞା ମୋତେ ତ –

ମହା – ତୁନି ହୁଅ । ସତ କଥା କୁହ ।

ବ:ପ　ମୁଁ ମିଛ କହୁନାହିଁ ଆଜ୍ଞା ! ମୁଁ ତ ଭଲ ପିନ୍ଧା ଲାଗି ବଢ଼େଇ
　　ଥିଲି ।

ମହା—ଭଲ ପିନ୍ଧା ଲାଗି ବଢ଼ାଇ ଯାଇଥିଲ ? ଆଉ ମୁଁ କଅଣ ଅନ୍ଧ ?
　　ଦେଉଳ କରଣେ ! ବଡ ମହାସ୍ନାନ କରାଇ ମାଣ୍ଡ ବଢ଼ାଅ ।
　　ଭୋଗ ପୋଛାଇ ଦେଇ, ନୂଆ କରି ଅମୁଣିଆ ବସାଅ ।
　　ଆଉ ତୁମେ ବଡ଼ପଣ୍ଡା ! ମଧୁ ମେକାପଙ୍କୁ ସାଙ୍ଗରେ ଧରି
　　ନଅର ଦୁଆରେ ହାଜର ହୁଅ । ଦେଖ, ଏହାର କାରଣ ନ
　　ଦେଖାଇ ପାରିଲେ ତୁମ ଦୁହିଁଙ୍କୁ ସବଂଶେ ରାଜ୍ୟରୁ ବାହାର
　　କରି ଦିଆଯିବ । ଯାଅ, ମାଣ୍ଡ ବନ୍ଦ କର । ( ରାଗରେ
　　ଚାଲିଗଲେ )

ବ:ପଣ୍ଡା　( ଜଗନ୍ନାଥଙ୍କୁ ଯୁକ୍ତ କରଯୋଡ଼ି )
　　ଜଗବନ୍ଧୁ ! ତମ ଇଚ୍ଛା –

---

# —ପଞ୍ଚମ ଅଙ୍କ—

## ପ୍ରଥମ ଦୃଶ୍ୟ

(ପୁରୀ ରାଜନବରର ଏକ ଅଂଶ । ରାମକୃଷ୍ଣ ବସି ରାମ ଚଉତିଶା ଲେଖା ଶେଷ କରୁଥିଲେ, ଇତି ମଧ୍ୟରେ ବାଚସ୍ପତି ଆସି ପହଞ୍ଚିଲେ)

ବାଚସ୍ପତି—( ହାତରେ ଖଣ୍ଡିଏ ପୋଥି ଧେନି ) ସେ ଖଣ୍ଡି କଅଣ ଲେଖା ହେଉଛି ରାମକୃଷ୍ଣଙ୍କେ ?

ରାମ—ଓ, ବାଚସ୍ପତିଏ, ପ୍ରଣାମ ପ୍ରଣାମ !

ବା—( ଆଶୀର୍ବାଦ କଲେ ) ଦୀର୍ଘାୟୁ ଭବ । କଅଣ ସେ ହେ !

ରାମ— ରାମ ଚଉତିଶା । ସେ ବୁଢ଼ୀକି ଲେଖା ଆଜ୍ଞା ହେଉଛି ପରା ?

ବା—କଅଣ ଲେଖ ଆଜ୍ଞା ହେଲା ?

ରାମ—ଯାହା ଶ୍ରୀମୁଖ ବଚନ ହୋଇ ଯାଇଥିଲା । ଶୁଣିଥିଲେ ପରା, ବାଇଗଣ ବାଲି ବୁଢ଼ୀ, କର୍ମ ତା'ର ଖୋଲିଛି, ନୋଇଲେ ଜଗନ୍ନାଥ ତା ଗୀତ ଶୁଣିବାକୁ ବଡ଼ ହେଉଛନ୍ତି ଛାଡ଼—

ବା—ହଇ ହେ, ସତେ କି ଅଦ୍ଭୁତ କଥା । ମହାରାଜାଙ୍କୁ ପୁଣି ସ୍ୱପ୍ନରେ କୁହାଗଲା—

ଛା—ସେତିକି ନହୋଇ ଥିଲେ ତ ବଡ଼ପଣ୍ଡା ହରିହର ବଂଶ କୁଟୁମ୍ବ ଧେନି ମରି ଥାଆନ୍ତା ।

ବା—ଏବେ ବଡ଼ପଣ୍ଡାଙ୍କୁ ଫେ'ର୍ ଛାଡ଼ ହେଲାଣି ତ ?

ଛା—ଖାଲି ଛାଡ଼ ! ପାଟଯଥା କୁଣ୍ଡଳ ସହିତ ନାଁ ?

ବା—କଅଣ ବୋଲୁଚ ଏବେ ?

ଘୁମ୍ମୁ—ଆଉ ?

ବା—ସେ ବୁଢ଼ୀ କ ଫେ'ର୍ ?

ଘୁ—ଏଇ ପତ୍ର ଲେଖ । ବଂଶାନୁକ୍ରମେ ଶ୍ରୀମନ୍ଦିରରେ ବଡ଼ସିଂହାର ଚନ୍ଦନଲାଗିରେ ଗୀତଗୋବିନ୍ଦ ପଢ଼ୁଥିବେ, ସେଥିକ ସୁନାବେଣ୍ଟ, ରୂପା ବେଣ୍ଟ ଚଅଁର, ନନ୍ଦ୍ୟାନ ଖେଇକ ଜଗନ୍ନାଥ ବଲ୍ଲଭରୁ ଖଞ୍ଜା । ମୁଁ ମାଦଳାରେ ଲେଖି ଆସିଲି । ବାକ ଏ ଚିଠାଉରେ ସନ୍ତକ ହେଲେ ବୁଢ଼ୀକ ମିଳିଯିବ ।

ବା—ହଁ, ସତ ଯେ ! ଫେ'ର୍ କୋଉ ଗୀତଗୋବିନ୍ଦ ବୁଢ଼ୀ ଗାଇବ, ସେବାରେ ?

ଘୁ—କାହିଁକ ?

ବା—ଆହା ! ଆପ୍ପୁ ବୁଝୁଛ ! ହେଇଛି ପତ୍ର ପୋଥି ! ଅଭିନବ ଗୀତ-ଗୋବିନ୍ଦ ! ମହାରାଜ ତ ନିଜେ କବି । ଆଜ୍ଞା ପ୍ରମାଣେ ଦଶ ଜଣ ବଡ଼ ବଡ଼ ପଣ୍ଡିତ ବସି, ବିଚାରି, ଲେଖା ସଂଶୋଧନ କରି, ଆଜ ଗ୍ରନ୍ଥ ସମାପ୍ତ ହେଲା । ଖାଲି ଘୁମ୍ମୁ ପଇଠ ସାରିଲେ, ଆମର ଛୁଟି ।

ଘୁ—ପ୍ରେ ଫେ'ର୍ କଅଣ ହବ ?

ବା—ଛଡର ଗୋଠାଇବା ଲୋକର ଚୋଟା ମୂଲ କାହିଁକ ହେ ଘୁମ୍ମୁକରଣେ ? ଆମେ ସେଥିରୁ କ ପାଇବା ? ରାଜାଦେଶ ! ଜୟଦେବଙ୍କ ଗୀତଗୋବିନ୍ଦ ପରି ଆଉ ଗୋଟିଏ ଭିଆର ଗ୍ରନ୍ଥ ଲେଖା ହୋଇଗଲା । ଏଣିକ ସେ ଜାଣନ୍ତୁ—ଗ୍ରନ୍ଥ ଜାଣେ ।

ଘୁମ୍ମୁ—ଘୁମ୍ମୁରୁ ନିଜେ ଲେଖି ଆଜ୍ଞା ହୋଇଛନ୍ତି ଏବେ ?

ବା—ଶୁଣୁଛ ପରା ଦଶଜଣ ପଣ୍ଡିତ ଲାଗିଛନ୍ତି ? ମହାରାଜା ନିଜେ ଶ୍ରୀମୁଖରେ ହୁକୁମ କରୁଥାଆନ୍ତି ପଦ । ଆମେମାନେ ସେ ସବୁ ଲେଖୁଥାଉଁ, ଏମିତି ହୋଇ ଗ୍ରନ୍ଥ ସରିଲା । ଆଉଥରେ ସାଫି ହୋଇ ଆଜ ଦେବାର୍ଚ୍ଚନ ବେଳକୁ ସ୍ୱାମୁ ପଇଠ କରିବାକୁ ଆଦେଶ ।

ସ୍ୱା—କାହିଁ, କେମିତି ଶେଷ ହୋଇଛି ଦେଖିବା, ପଢ଼ିଲେ ଟିକିଏ ।

ବା—(ପୁଞ୍ଜା ଲେଉଟାଇ) ହଉ, ଶେଷ ଶ୍ଳୋକଟି ଶୁଣ ।

ଇଥଂ କେଳିତତିର୍ବିହୃତ୍ୟ ଯମୁନା—
କୂଳେ ସମଂ ରାଧୟା ।
ତଦ୍ରୋମାବଳି ମୌକ୍ତିକାବଳିଯୁଗେ
ବେଣୀ ଭ୍ରମଂ ବିଭ୍ରତି—

(ନେପଥ୍ୟେ କାହାଳୀ ବାଜିଲା)

ସ୍ୱା—( ହଠାତ୍ ପୋଥି ବାନ୍ଧି ) ସ୍ୱାମୁରୁ ଦେବାର୍ଚ୍ଚନକୁ ବେଳେ ହେଲେଣି । ପଛେ ଦେଖିବା—ଚାଲନ୍ତୁ, ଚାଲନ୍ତୁ ।

ବା—ଉଃ, ବିଳମ୍ବ ହୋଇଗଲା ଏଇଠି ।

(ପୁଣି କାହାଳୀ ଶୁଭିଲା, ଦୁହେଁ ତର ତର ହୋଇ ଚାଲିଗଲେ)



## ଦ୍ୱିତୀୟ ଦୃଶ୍ୟ

### ଜୟଦେବ

[ପୁରୀର ରାଜପଥ – ବାଳକ ବେଶୀ ଶ୍ରୀକୃଷ୍ଣ ଓ ଅନ୍ଧ ପୂଜାରୀ]

ବାଳକ—କ୍ଷିତି ରତି ବିପୁଳ ତରେ –

ପୂ—କେଶବ ଧୃତ—

ବା—ଉହୁଁ, ପୁଣି ତ ଭୁଲ କରୁଚ । ମୋ ସାଙ୍ଗରେ ସାଙ୍ଗରେ ଗାଅ,
 କ୍ଷିତିରତି ବିପୁଳ ତରେ—ଗାଅ –

ପୂ—କ୍ଷିତିରତି ବିପୁଳ ତରେ—

ବା—ତବ ତିଷ୍ଠତି ପୃଷ୍ଠେ

ପୂ—ତବ ତିଷ୍ଠତି ପୃଷ୍ଠେ

ବା—ଧରଣୀଧରଣ କିଣଚକ୍ର ଗରିଷ୍ଠେ –

ପୂ –(ଅନୁକରଣ କଲା)

ବା – କେଶବ ! ଧୃତ କଚ୍ଛପ ରୂପ

ପୂ—କେଶବ । ଧୃତ କଚ୍ଛପ ରୂପ, ଜୟ ଜଗଦୀଶ ହରେ ।
 ଜୟ ଜଗଦୀଶ ହରେ ।

ବା—ମନେ ରଖିଲେ ହବ ନାଁ, ତୁମେ ତ ଭୁଲି ଯାଉଚ!
 ( ଯାଉ ଯାଉ ପୂଜାରୀ ଝୁଣ୍ଟି ପଡ଼ିବାର ଦେଖି ) ଆହା ହା !
 ଧୀରେ ଧୀରେ ଚାଲ, ଏଇନେ ପଡ଼ି ଯାଇଥାଆନ୍ତ !

ପୂ—କେତେଦିନ ଆଉ ଏମିତି ବାର ଦୁଆରେ ଭିକ ମୁଠେ ମୁଠେ
 ମାଗି ଚଳିବି ବାପା ?

ବା—ତେବେ କଅଣ ଗାଆଁକୁ ଯିବ ?

ପୃ—(ଦୀର୍ଘଶ୍ୱାସ ମାତ୍ର ) ନାଁ, ଗାଆଁକୁ ? ଏଇ ଅନ୍ଧ ଆଖିରେ ?
ଆଉ ବାପା ! ପୁରୁଷୋତ୍ତମ ସହର ପ୍ରେ, କାହାକୁ ଦେଖେଇଲେ—
ସେ ମୋ ଆଖି ହଇଛି –

ବା – ଅ.ଚ୍ଛା, ତୁମେ ଆଜ ମୋ ସାଙ୍ଗରେ ଚାଲ । ଦେଖିବା, କେଜାଣି
ଯଦି ସେଠି ତମର ଆ.ଖି –

ପୃ – କଏ ଅଛୁ ତେବେ ? ଚାଲ, ମୁଁ ତା ଗୋଡ଼ତଳେ ପଡ଼ିବି ।
ଚାଲ ବାପା ! ମୋତେ ସେଇଠିକି ନେଇ ଚାଲ ।

ବା – ବାଳକ, ସେଇ ପାଖଟାରେ ତମ ଗାଆଁ ଜୟଦେବ ଗୋସେଇଁ
ଥାଆନ୍ତି । କାଲେ ତମକୁ ଦେଖିବେ, ତୁମେ ପରା ମନା
କରୁଥିଲ ତାଙ୍କୁ ଦେଖା ଦବନାଇଁ ?

ପୃ – ଥାଆନ୍ତୁ ପଛେ, ଆଉ କଅଣ କରିବ ? ସେ ନଥିବାବେଳେ
ଯେବେ କେମିତି –

ବା – ଆଚ୍ଛା ଦେଖିବା, ଚାଲ –

ପୃ – ମୁଁ ଭଲ ହୋଇ ଯିବଟି ?

ବା – ସେ ଦେଖନ୍ତୁ ଆଗ ତମ ଆଖି । ତା'ପରେ ଯିନା –

ପୃ – ହଉ ବାପା, ତମ ଧର୍ମ !

ବା – ମୁଁ ଆଗେ ଆଗେ ଗାଇ ଗାଇ ଚାଲୁଚି, ତୁମେ ପଛେ ପଛେ ଆସ ।

ପୃ – ଚାଲ ବାପା, ତମର ବହୁତ ଧର୍ମ ହବ ।

ବା – ବସତି ଦଶନ ଶିଖରେ ଧରଣୀ ତବ ଲଗ୍ନା
ଶଶିନିକଳଙ୍କ କଳେବ ନିମଗ୍ନା
କେଶବ ! ଧୃତ ଶୂକର ରୂପ, ଜୟ ଜଗଦୀଶ ହରେ,
ଜୟ ଜଗଦୀଶ ହରେ ।
(ପୂରିଆ ପଦେ ପଦେ ଗାଇ ଗାଇ ପଛେ ପଛେ ଚାଲିଲେ)



# ତୃତୀୟ ଦୃଶ୍ୟ

[ପୁରୀ ରାଜପୁର. ଶୟନକକ୍ଷ, ଗୋଟିଏ ପେଲ୍‌ସଜରେ ଦୀପ ଜଳୁଛି । ଦୂର-ବର୍ତ୍ତୀ ଧୂକୁଡ଼ି ଦୁଆର ନହବତ୍ ଖାନାରୁ ନହବତ୍ ବାଜି ରାତ୍ରିର ୪ର୍ଥ ପ୍ରହର ସୂଚାଇ ଦେଲା, ସ୍ୱପ୍ନରେ ଜଗନ୍ନାଥ ଦର୍ଶନ ଦେଇ ଆଦେଶ ଦେଲେ ।]

ଶ୍ରୀକୃଷ୍ଣ—ଭକ୍ତ ଜୟଦେବଙ୍କ ରଚିତ ଗୀତଗୋବିନ୍ଦ ପାଠ ବାରଣ କରନାହିଁ । ମୁଁ ନିଜେ ତାହା ସ୍ୱହସ୍ତରେ ପୂରଣ କରିଛି ।

ରାଜା—(ନିଦ୍ରାରେ)

କିନ୍ତୁ ଦେବ !
ବୃଥା ହେବ ମୋ ପ୍ରୟାସ ତେବେ ?
ବହୁ ଶ୍ରମେ—
ଶ୍ରୀ ଚରଣେ ତବ ଭେଟିବାକୁ
ରଚିଲି ମୁଁ,
ଅଭିନବ ଶ୍ରୀଗୀତଗୋବିନ୍ଦ !
ଯହୁଁ ବୁଝିଲି ମୁଁ ହେ ଗୋବିନ୍ଦ !
ଶ୍ରଦ୍ଧା ତବ ଗୀତଗୋବିନ୍ଦରେ ;—
ଯହିଁ ହେତୁ ଦେବ,
ଚନ୍ଦ୍ର ନିଶୀଥରେ ଥରେ
ଛୁଡ଼ି ରହିବେଣି,

ବୃଦ୍ଧା ପଡ଼ିଛ ପଚ୍ଛେ ବୁଲି
ଚିରଲ ବସନ ।
ଯହିଁ ହେଉ, ଚକ୍ଷୁ ମଧ୍ୟେ ନ ଦେଇ ଦର୍ଶନ,
ଛପନ ଭୋଗୀ ହେ ନାଥ !
ଧୂପେ କିତ ଘଟୁଛି ବିଳମ୍ବ ;
କପରି ସମ୍ଭବ ହେବ ଅଘଟନ କଥା ?
ବହୁଦିନୁ ଏ କଳ୍ପନା ଜାଗିଲାଣି ମନେ ।
ଏବେ ଗ୍ରନ୍ଥ ହେଲା ପୂର୍ତ୍ତି ।
କବା ଅପରାଧେ ମୋର
ଜଗନ୍ନାଥ !
ନ ଘେନିବ କହ ପ୍ରଭୋ !
ନୈବେଦ୍ୟ ମୋହର ?
ଅପରାଧୀ ହେଲେ ମୁହିଁ ଚରଣରେ ତବ,
ତୁମେ ପରା କ୍ଷମାର ସାଗର ?

ଶ୍ରୀକୃଷ୍ଣ—ଅବୁଝା ହୁଅ ନାହିଁ ରାଜା ! ତୁମେ ମୋର ଭକ୍ତ ସତ୍ୟ; କିନ୍ତୁ ଜୟଦେବ ପରମ ଭକ୍ତ । ତ୍ରିଭୁବନରେ ଗୀତ-ଗୋବିନ୍ଦଠାରୁ ବଳି ଅଧିକ ପ୍ରିୟ ମୋର କିଛି ନାହିଁ ।

ରାଜା—ଶୁଣ ତେବେ ଜଗବନ୍ଧୁ !
ଘେନା ଯେବେ ନୋହିଲା ହେ ଦାସ ନିବେଦନ,
ଆତ୍ମହତ୍ୟା !
ପାପୀର ଜୀବନ ଯାଉ ପାପ ନରକରେ ।
ପ୍ରସ୍ତୁତ ହୋଇଲେ କିଷି

ପାପ ମୁଖ କେଭ୍ଳି ମୋର
ନ ଦେଖିବେ ଆଜ ।

ଶ୍ରୀକୃଷ୍ଣ—ଛି, ଛି,
ପାପ କଥା ନ କହ ରାଜନ,
କଏ କହେ ନୁହ ବୋଲି
ତୁମ୍ଭେ ମୋର ଭକ୍ତ ?
ତଥାପି ହେ ରାଜା !
କହୁଛି ତ
ଅଧିକ ଆଦର ମୋର
ଗୀତଗୋବିନ୍ଦରେ ।
କିନ୍ତୁ ଭକ୍ତ ! ଇଚ୍ଛା ତୋର ରକ୍ଷା ହେବୁ
ଜୟଦେବକୃତ ଗ୍ରନ୍ଥେ—
ଦ୍ୱାଦଶ ସର୍ଗରେ
ଦ୍ୱାଦଶଟି ଶ୍ଳୋକ ତବ
ହେଉ ସମ୍ମିଳିତ ।
ପୂର୍ଣ୍ଣ ହେଉ ମନୋରଥ ତବ । ( ଅନ୍ତର୍ଦ୍ଧାନ ହେଲେ )

ରାଜା —( ହଠାତ୍ ସ୍ୱପ୍ନରୁ ଉଠି ବସିଲେ )
ସ୍ୱପ୍ନ ! କାହିଁ, କେଭ୍ଳି ତ ନାହିଁ । ଏ ସ୍ୱପ୍ନ କଅଣ ସତ୍ୟ ? ମୁଁ ସତ୍ୟ ମିଥ୍ୟା ଜାଣି ନାହିଁ, ଏ ସ୍ୱପ୍ନ ମୁଁ ପରୀକ୍ଷା କରିବ । ଜଗନ୍ନାଥ ! ତୁମର ଚରଣ ତଳେ ଆଜ ଏ ସ୍ୱପ୍ନାଦେଶର ସମାଧାନ ହେଉ । ନୋହିଲେ ବୁଝିବି—ଏ କେବଳ ଏକା ମାୟା ! ଚତୁର ଛଳୁମ ! ଗୀତଗୋବିନ୍ଦରେ ଏତେ ଶ୍ରଦ୍ଧା ? କିନ୍ତୁ ଜଗବନ୍ଧୁ ! ତୁମର ନାମ ଧରି ଶପଥ କରୁଛି—ଯଦି

ଏ ସ୍ୱପ୍ନ ସତ୍ୟ ହୁଏ, ତେବେ ତ ମଙ୍ଗଳ—ଆଜଠାରୁ ବିଷ୍ଣୁଭକ୍ତ ଜୟଦେବ ମୋର ସଖା, ବନ୍ଧୁ। ଜୟଦେବ ଉତ୍କଳର ରାଜସଭା ମଣ୍ଡନ କରିବେ, ( ଭାବି ) ନୋହିଲେ— ତୁମର ନାମରେ ଏକଥା ମଧ୍ୟ ସତ୍ୟ କରୁଚି ଜଗନ୍ନାଥ।
ଏହାର ଶାସ୍ତି—ଏହାର ଶାସ୍ତି—

( ବୁଢ଼ଣ ପ୍ରହରୀ ଗାଇଲେ )

ରାଜା—( ଦଣ୍ଡେ ନୀରବ ରହି ) ଓ—ପ୍ରଭାତ ହେଲାଣି।

— - —

## ଚତୁର୍ଥ ଦୃଶ୍ୟ

ପୁରୀର ଗଳିରାସ୍ତା

(ବାଳକବେଶୀ ଶ୍ରୀକୃଷ୍ଣ ପୁରିଆ ଗାଉଥିଲେ)

ବସତି ଦଶନ ଶିଖରେ ଧରଣୀ ତବଲଗ୍ନା
ଶଶିନିକଳଙ୍କ କଳେବ ନିମଗ୍ନା
କେଶବ, ଧୃତ !

( ପଛ ପଦବେଳକୁ ଶ୍ରୀକୃଷ୍ଣ ଗୀତ ବନ୍ଦ କରିଦେଲେ, ପୁରିଆ ଅଣ୍ଡାଳ ହୋଇ )

ପୁରିଆ—ଗୋବିନ୍ଦ ! ଗୋବିନ୍ଦ !

ଶ୍ରୀ – ହୋଇଚି ମୁଁ ଅଛୁ ପରା !

ପୁ—ହଁ, କୋଉ ଜନ୍ମରେ ମୋର କଅଣ ଥିଲୁ ବାପା ! ମୋ ଲାଗି କେତେ କଷ୍ଟ ପାଉଚୁ ! ଅନ୍ଧଟାକୁ ବାଟ କଢ଼ାଉଚୁ ! ତୋର ଏ ଋଣ କେମିତି ସୁଝିବି ରେ ବାପା ! ତୋର ତ ମୁଁ କିଛୁ କରିନାହିଁ।

ଶ୍ରୀ — ତୁମର ଆଖି ନାହିଁ ଯେ ! ତୁମେ ଆଜ କଅଣ କରିବ ? ମୁଁ
　　ସାଙ୍ଗ ଛାଡ଼ିଦେଲେ ତୁମେ ଆଜ ଖାଇ ପାରିବ କେମିତି ?

ପୂ — ଖାଇବି ? ଆଉରି ଖାଇବି ? ଏଇ ଅନ୍ଧ ଆଖିରେ ଆଉରି ଖାଇବି ?
　　ଆଉର ପାଣ୍ଟି ହେବ ?

ଶ୍ରୀ — ଛି, ଛି, ତୁମେ କାନ୍ଧୁଚ ?

ପୂ — ନାହିଁ, ତୁ ଯୋଉ କବିରାଜ କଥା କହୁଥିଲୁ; ତାଙ୍କ ଘର ଆଉ
　　କେତେ ବାଟ ଅଛି ? ସେ ମୋ ଆଖି ଭଲକରି ଦେବେ ନାଁ ?

ଶ୍ରୀ — ହଁ, ଭଲ ହେଇ ଯିବ ଯେ ! ତାଙ୍କୁ କହିବ ତମ ମନକଥା ସବୁ,
　　ମୁଁ ତମକୁ ତାଙ୍କ ଦୁଆର ମୁହଁରେ ଛାଡ଼ିଦେଇ ତମ ପାଖରୁ
　　ଅଲଗେଇ ହେଇଯିବି । ଏଇ ତ ପାଖଟା ।

ପୂ — ନାଇଁ, ନାଇଁ, ତୁ କୁଆଡ଼େ ଚାଲିଯିବୁ ବାପା ?

ଶ୍ରୀ — ତୁମେ ତମର ମନକଥା ସବୁ ତାଙ୍କୁ କହିବ — ଗୋଟି ଗୋଟି
　　ଫିଟେଇ କରି । ମୁଁ ଆଉ ସେଠି କାହିଁକି ଥିବି ? ଫେରି ମୁଁ
　　ଆସିବି ଯେ ତମ ପାଖକୁ ।

ପୂ — ମୋତେ ତାଙ୍କ ଘରଠୁ ପୁଣି ନେବ କିଏ ?

ଶ୍ରୀ — ଆଗେ ଭଲ ହେଇ ସାର ।

ପୂ — ହଉ ତୋ ମନ । ମୋର ତ ଆଉ କେହି ସାହା ଭରସା ନାହିଁ ।
　　କେତେ ପାପ କରିଛି, ସେଇ ଜଗନ୍ନାଥ ଯାହା କରିବେ ।

ଶ୍ରୀ — ଆଉ ଟିକିଏ ଆଗେଇ ଆସ (ନେଇଗଲେ) । ସେଇଠି ଠିଆ
　　ହୋଇ ଗୀତ ଗାଆ — ହରି ଭକ୍ତ ସେ — ହରିନାମ
　　ଶୁଣିଲେ ଛୁଏଁ ଘରୁ ବାହାରି ଆସିବେ ।

ପୂ—ହଜ, ତୁ କଅଣ ଯିବୁ କାହାର ?

ସ୍ତ୍ରୀ—ହଁ, ତୁମେ ଗାଅ ।

ପୂ—[ ଗୀତଗୋବିନ୍ଦ ଗାଇ ଗାଇ ଶ୍ରୀକୃଷ୍ଣ ଗୃହଗଲେ ହସି ହସି]

ବସତି ଦଶନଶିଖରେ ଧରଣୀ ତବ ଲଗ୍ନା
ଶଶିନି କଳଙ୍କ କଳେବ ନିମଗ୍ନା
କେଶବ, ଧୃତ ଶୂକର ରୂପ, ଜୟ ଜଗଦୀଶ ହରେ ।

[ପୂଜାରୀ ଗାଉଥାଏ ଗୀତ, ଇତି ମଧ୍ୟରେ ଗ୍ରେହଣୀ ଆସି ଗୃହଁତ ଏକ ହାଗରୁ ପୂଜାରୀକୁ ନଜରେଣି]

ଗ୍ରେ—ଆଲୋ ହମର୍କୀ ! ଦେଖିବୁ ଆ ଲୋ ! ଆମର ଗାଆଁ ପୂଜାରୀ ଦେଉରେ –

ହ—ସେ ପୋଡ଼ପାଡ଼ ଫେ'ର୍—

ପୂ—( କଥା ଶୁଣି ) କିଏ ତୁମେ ସବୁ ? ଟିକିଏ କବିରାଜଙ୍କୁ ଡାକି ଦିଅନ୍ତୁ !

ହ—ଆଲୋ ସତେ ଲୋ ! ସେଇ କ କଅଣ ତ, ଗାଆଁଠୁ ପୂରସ୍ତମ ଯାଏ ପଛରେ ପଛରେ ଲାଗିଛି । ମରଣ ହଉ ନାଇଁ, ପୋଡ଼ା ମୁହାଁକୁ ।

ପୂ—ଟିକିଏ ଡାକିଦିଅ କବିରାଜଙ୍କୁ !

ହ—ଦେଖୁଚୁ ଲୋ ତା ନାହୁଲି ଛଟା (ପୂଜାରୀ ପ୍ରତି) ମଲ ! ଏଠି କୋଉ କବିରାଜ ଆଅନ୍ତି ମ ? କାହାକୁ ଡାକି ଦେବା ? ଏଠି କବିରାଜ ଫବିରାଜ କେହି ନାହାନ୍ତି ।

ପୂ—ହଁ, ହଁ, ଅଛନ୍ତି । ଏଇଠି କୋଉଠି ତାଙ୍କ ଘର । ମୋତେ ଗୋବିନ୍ଦ କହିଲେ, ସେ ଘର ହରିଭକ୍ତ । ହରିନାମ ଶୁଣିଲେ

ସେ ଘରୁ ବାହାର ଆସିବେ । ତୁମେ ତ ଆଉ ନୁହଁ, ସତ କହ ମୋତେ । ମୁଁ ଅନ୍ଧ ଟେ ।

ବ—ଅନ୍ଧ !

ସେ—ଛଟା ଗାଉଥିବ ମ !

ବ – ଦେଖେଁ ।

ସେ—ପାଖକୁ ଯାଉଚୁ ?

ବ—ମଲ, କଅଣ ଖାଇ ପିବକ ଆଜ ? [ ଗୃହିଁଲ ] ଆଲେ ସତଲେ, ଅନ୍ଧ ତ ! ବାକ୍ସ—

ପୂରଆ—( ପୁଣି ଗାଇଲ )

ଶ୍ରୀ ଜୟଦେବ କବେରଦଂ କୁରୁତେ ମୁଦଂ
ମଙ୍ଗଳମୁଜ୍ଜ୍ୱଳ ଗୀତ—ଜୟ ଜୟ ଦେବହରେ ।

ଜୟଦେବ—(ଅନ୍ୟ ପଦ ଗାଇ ଗାଇ ଆସୁଛନ୍ତି ତନ୍ମୟ ଭାବରେ । ତାଙ୍କ ପଛେ ପଛେ ପଦ୍ମା )

( ପୂରଆର ଗୀତ ବନ୍ଦ ହୋଇଗଲା )

ଜୟ—କଏ ? କଏ ତୁମେ ? ମୋର ଗୀତଗୋବିନ୍ଦ ଗାଇଲ ?

ପୂ – ତୁମେ ? ତୁମେ କବିରାଜ ? [ ଗୋଡ଼ତଳେ ପଡ଼ି ] ବହୁତ ପାପ କରିଚ ମୁଁ, ଏଇ ଆଖି ଯୋଗୁ ବହୁତ ପାପ କରିଛୁ ମୁଁ । ମୁଁ ଅନ୍ଧ । ତୁମେ କବିରାଜ ! ତୁମେ କବିରାଜ !

ଜୟ —ଉଠ, ଉଠ, [ ଉଠାଇ] ଏ କଅଣ କହୁଚ ! ମୁଁ ତ ବୈଦ୍ୟ ନୁହେଁ ।

ପୂ – ନା, ନା, ତୁମେ କବିରାଜ ! କବିରାଜ ! ମୋତେ ଗୋବିନ୍ଦ କହିଛୁ ।

ଜୟ—ଗୋବିନ୍ଦ ? କୋଉ ଗୋବିନ୍ଦ ?

ପୂ—ତୁମେ ତାଙ୍କୁ ଚହ୍ନିଚ—ଏଇଠି ଘୁଞ୍ଚ ଦେଇ ଚାଲିଗଲ ଅନ୍ଧଟାଙ୍କୁ । ତୁମେ ମତେ ଠକ ନାହିଁ, ଗୋବିନ୍ଦ କହୁଛି, ତୁମେ ମୋତେ ଭଲ କର ଦେବ । ତୁମେ ମୋ ଆଖି ଦେବ । ତୁମେ କବିରାଜ । ତୁମ ଆଗରେ ମୋର ସବୁ ପାପ କହି ଯାଉଛି, ଶୁଣ । ମୁଁ ମହା ପାପୀ, ସତୀ ଉପରେ ଆଖି ପକାଇଛି, କହିବି, ସବୁ ତମକୁ । ପାପ କଥାସବୁ— ପାପ କଥା ସବୁ ତମକୁ କହିବି, ତୁମେ କବିରାଜ । ତୁମକୁ କହିବାକୁ ଗୋବିନ୍ଦ କହିଚ, ତୁମେ ମୋତେ ଆଖି ଦବ । ମୁଁ ଜଗନ୍ନାଥ ଦର୍ଶନ କରିବି, ମୁଁ ଜଗବନ୍ଧୁଙ୍କୁ ଦେଖିବି ।

ଜୟ—କିନ୍ତୁ ମୁଁ—ତ ।

ପୂ—ମୋତେ ଠକ ନାହିଁ—ମୁଁ ଆଉ ମିଛ କହୁନାହିଁ । ହେଇ ଦେଖ, ଦେଖ, ମୁଁ ଅନ୍ଧ । ତୁମେ ଆଖି ଦେଲେ ମୁଁ ଜଗବନ୍ଧୁଙ୍କୁ ଦର୍ଶନ କରିବି । ଏ ଧର୍ମ ତୁମର ବାବା, କବିରାଜ । ଦେଖ, ଦେଖ, ( ଜୟଦେବଙ୍କ ହାତ ନେଇ ନିଜ ଆଖିରେ ଲଗାଇ ) ମୁଁ ଅନ୍ଧ ! ତୁମେ ମୋତେ ଭଲ କରି ଦେବ । ଗୋବିନ୍ଦ କହୁଛି ।

ଜୟଦେବ—( ଆଖି ମୁଦି ) ଗୋବିନ୍ଦ ? ଗୋବିନ୍ଦ କହିଲେ ତୁମେ ଭଲ ହେବ ? ଅନ୍ଧ ନୟନର ଅଞ୍ଜନ ଗୋବିନ୍ଦ ତୁମକୁ ଆଖି ଦିଅନ୍ତୁ । ହେ ଗୋବିନ୍ଦ ! (ଦୁଇ ହାତ ଅନ୍ଧ ଆଖିରେ ବୁଲାଇଲେ ଓ ବୁଲାଉ ବୁଲାଉ ଗାଇଲେ ଗୀତ ଗୋବିନ୍ଦ ।

ପୂ—( ଜୟଦେବଙ୍କର ଦୁଇଟି ହାତ କଚଟି ଠାରୁ ଧରି ଧୀରେ ଧୀରେ ଓହ୍ଲାଇ—ତାଙ୍କୁ ସବୁ ଦିଶୁଚି ) କିଏ ? ଜୟଦେବ ଗୋସେଇଁ ! ( ପଛକୁ ଘୁଞ୍ଚି ଦେଖେ ପଦ୍ମା, ଜୟଦେବଙ୍କୁ

ଗୁଡ଼ ତାଙ୍କ ଗୋଡ଼ତଳେ ପଡ଼ ) ମା ! ମା ! ମା ! ମୋତେ
କ୍ଷମାକର ମା !

ଶ୍ୟାମଳୀ—( ଗାଲରେ ହାତ ଦେଇ ) ଆମ୍ଭେ ସେଇ ଲେ !

[ ଜୟଦେବ ସଙ୍କୀର୍ତ୍ତନ୍ୟ ଭଳି ଗୀତଗୋବିନ୍ଦ ଗାଇଲେ ]

ଜୟ — ଗୀତ

ଚନ୍ଦନଚର୍ଚ୍ଚିତ ନୀଳକଳେବର ପୀତବସନ ବନମାଳୀ
କେଳିଚଳନ୍ମଣିକୁଣ୍ଡଳମଣ୍ଡିତ ଗଣ୍ଡଯୁଗସ୍ମିତଶାଳୀ
( ସମସ୍ତେ ପୁଣି ଏକାଠି ଗାଇଲେ )

— — —

## ପଞ୍ଚମ ଦୃଶ୍ୟ

( ବଡ଼ଦାଣ୍ଡ—ଭିକାରୀ ଗାଇ ଗାଇ ଯାଉଛି )

ବଡ଼ ଦେଉଳେ ବିଜେ ଜଗନ୍ନାଥ
ପତିତ ପାବନ ବାନା
ଉଡ଼େ ଫରହର ଅନା
ଆକାଶେ ଲାଗିଛି ତା ମାଥ ।୧।
ବଡ଼ ରଜା ଓଡ଼ିଶାର ବଡ଼ଦାଣ୍ଡ ତାର
ବଡ଼ ଦେଉଳରେ ବିଜେ ଜଗତ ଠାକୁର,
ଦରିଆ ବଡ଼ ତାର
ବଡ଼ ତା କାରିଗର
ବଡ଼ ପଣ୍ଡିତ କବି ଓଡ଼ିଶା ରଜାଘର
ବଡ଼ ଠାକୁର ଯହିଁ ଝୋକନ୍ତି ବେଦ ହାତ ।୨।



## ଷଷ୍ଠ ଦୃଶ୍ୟ

ଚନ୍ଦନତୀର୍ଥ

[ ଜଣେ ପଣ୍ଡା ଠିଆ ହୋଇଥିଲେ, ଗୋଟିଏ ତେଲୁଗୁ ଯାତ୍ରୀ ଗୋଡ଼ ତଳେ ମୁଣ୍ଡିଆ ମାରସାରି ଉଠିଲା । ]

ପଣ୍ଡା —ଜଗବନ୍ଧୁ ମଙ୍ଗଳ କରନ୍ତୁ । ଏଥର ଯା--ଦରିଆରେ ବୁଡ଼ଟେ ପକେଇ ଆ ।

( ତେଲଗୁ ଯାତ୍ରୀ ମୁଣ୍ଡ ହଲାଇ ସମ୍ମତି ଜଣାଇ ଚାଲିଗଲା )

(ପଣ୍ଡା ଚାଲିଯିବାବେଳକୁ ଜଣେ ଯାତ୍ରୀ ଗୁମାସ୍ତା ଆସି ପହଞ୍ଚିଲେ)

ଗୁମାସ୍ତା—ହଇଏ ମହାପୁରୁ ? କେତେ ଫଳିଲା ?

ପଣ୍ଡା—ଫଳବ ? ତା କଥା କାହିଁକି ପଚାରୁଛୁ ହାମି ? ଅଠରନଳାଠୁ ବେହ୍ମପୋକୁ ପାଠ ପଢ଼େଇ ପଢ଼େଇ ଆଇଲି ଆମ ଧୂଳିଆ ଗୁମାସ୍ତା ଯେ—ବେହ୍ମପୋ ବୋଲି ଧରିବାକୁ ନାହିଁ । ବୋଲୁଚନ୍ତି ମୋର ପଣ୍ଡାଫଣ୍ଡା କେହି ନାହିଁ । ବେହ୍ମପୋ ଭାରି ଜାଲମ ।

ଗୁମାସ୍ତା —ଅଃ—ଜାଇଁଲ ମହାପ୍ରୁରୁ, ତମ ଗୁମାସ୍ତା ସେଇବେଳେ । ବେହ୍ମପୋକୁ ପଣେ କଉଡ଼ିରେ ଚନ୍ଦନଥର ବକା କିଣି ଥୋଇ ଦେବ—ବୋଇଲି ଜାଲମ ! ତା ଜାଲମଗିରି ତା ଗାଆଁ ଠିନାଁ, ଏ ଚନ୍ଦନତୀର୍ଥ ବାଲିରେ କି ହେ ? ଏଠିକି ଭଲ ପୁଅ

ହେଲେ ଭେଳେକା ବନଯିବ । ବୋଇଲ ଜାଲମ, ତମେ ଭୁନ ହୋଇ ବସିଲ ମାହାପୁରୁ—ଏକା ଡୋଲ ଅଠିଲ ହୋଇ ପୁରବା କଥାଟି କହ୍ନଥ—

ପଣ୍ଡା—ହଁ, ତନ୍ହିଁକ ମୁଁ ହଦେଇବା ପୁଅ ନୁହଁ ମ ଧନ, ହୋଇଚ ଧନ—ଆସୁଛ୍ଚ ବେହ୍ନପୋ ।

ଗୁମାସ୍ତା—ତେମେ ଥପୁ ଧର ବସ ମାହାପୁରୁ—ମୁଁ ତାକୁ ପାଠ ପଢ଼ଉଚ, ନାଆଁଟା ତା'ର କଅଣ ମତେ କହ୍ନଥବଟି—

ପଣ୍ଡା—ଶ୍ୟାମପଦ ଚକରବର୍ତ୍ତୀ ।

ଗୁମାସ୍ତା—ବାପ ନାଆଁ ?

ପଣ୍ଡା—ହୁଁଃ, ବଳଦଟାଏ ନାଁ ଚୋପେ ଦୁହଁ, କରେ ସେ କୋଉଠି ଆମେ କୋଉଠି—ପଗ୍ଭୁଚ ବାପ ନାଁ—ଆମେ କ ଜାଣୁ ବାପନାଁ । ରେ ?

ଗୁମାସ୍ତା—ହଉ ହଉ, ତେମେ ଥପୁ ଧର ବସ ।

( ନେପଥ୍ୟକୁ ଚାହିଁ ) ହୋଇଚ ଗଡ଼ଲାଣି ବେହ୍ନପୋ, ଏଇଠି ବେହ୍ନପୋକୁ ଚରଣପୂଜାଟେ କର ପଞ୍ଚତୀର୍ଥ ଦଖୋଉଚ ( ବଙ୍ଗାଳି ଯାତ୍ରୀ ଜଣେ ଆସିଲେ )

ଗୁମାସ୍ତା - ହଇଏ, ଓ ମଶାଏ ! ଅପନାର ନାମ ?

ବ: ଯାତ୍ରୀ – କେନ ?

ଗୁମାସ୍ତା—ଅଃ—ଶୁନୁନ୍ ନା—କୋଥାଏ ଯାବେନ ?

ବ: ଯାତ୍ରୀ—ପଞ୍ଚତୀର୍ଥେ –

ଗୁମାସ୍ତା – ପଞ୍ଚତୀର୍ଥେ ? ପଞ୍ଚତୀର୍ଥ ନାମ ଜାନା ଆଛେ ତ ଆଗେ ?

ବ: ଯାତ୍ରୀ – ଦରକାର ନେଇ, ଜେନେ ନବ, କା'ର କାଛ— ଥେକେ—

ଗୁମାସ୍ତା—ଶୁନୁନ୍ ନା, ତୀର୍ଥେ ଏସେ ଆବାର ରାଗାରାଗି କେନ ? ପଞ୍ଚତୀର୍ଥ ନାମ ହଲ—ଏଇ "ସମୁଦ୍ର, ମାର୍କଣ୍ଡ, ଶ୍ୱେତଗଙ୍ଗା, ମଣିକର୍ଣ୍ଣିକା, ଚନ୍ଦନତୀର୍ଥ ।" ପଞ୍ଚତୀର୍ଥ ସଫଲ ହବେ କେମନ ? ପାଣ୍ଡା ସାଙ୍ଗେ ନେଇଁ, ସଂକଳ୍ପ କରବେ କେ ? ଆପନାର ପାଣ୍ଡା କେ ?

ବ:ଯାତ୍ରୀ—ପାଣ୍ଡାଟାଣ୍ଡା ଆମାର ନେଇଁ ।

ଗୁମାସ୍ତା—(ହସି) ସତେ ? ବେହ୍ମପୋ ଜାଲମ ଖଣ୍ଡେ । (ଯାତ୍ରୀ ପ୍ରତି) ଆପନାର ନାମ ଶ୍ୟାମପଦ ଚକ୍ରବର୍ତ୍ତୀ ନାଁ ?

ବ:ଯାତ୍ରୀ—ହାଁ, ତୁମି କେମନ କରେ—          (ଆଶ୍ଚର୍ଯ୍ୟ ହେଲା)

ଗୁମାସ୍ତା—ଓଗୋ ଜାନ ଗୋ ଜାନ, ସବ୍ ଜାନ, ଆମରା ତୀର୍ଥବାସୀ କନାଁ—ପାଣ୍ଡା ଆପନାର ଓଇ ବସେଛେନ—ଶ୍ୟାମସୁନ୍ଦର ସିଂହାସନ । ଯାନ୍ ଯାନ୍—ଆଗେ ଚରଣ ପୂଜା କରୁନ୍ । ତାରପର ପଞ୍ଚତୀର୍ଥ, ଜଗବନ୍ଧୁ ଦର୍ଶନ, ବୈକୁଣ୍ଠ ଦର୍ଶନ, ଓଖାନେ ଶକ୍ତମତ ଆଟିକା ଦାନ ଦଏ, ସୁଫଲ କରେ, ରାଜ ଖୁସିତେ ବାଡ଼ି ଯାବେନ । ଆସୁନ—ଏଇ ଯେ ଆପଣାର ପାଣ୍ଡା, ଗଡ଼୍ କରୁନ୍—

ବ:ଯା—( ନମସ୍କାର କଲା )

ପଣ୍ଡା—ଜଗବନ୍ଧୁ ମଙ୍ଗଲ୍ କରୁନ୍ ।

ଗୁମାସ୍ତା—( ପଣ୍ଡା ପ୍ରତି ) ହେଇଟି ଆଗଣ୍ଡୁମୁଆଁ ଦୋକାନ ଅଛୁ । ଗୋଟେ ନଡ଼ିଆ, ପାଣି ଟାଳୁଟେ ଆଣେ—ବେହ୍ମପୋ ନାଲଯାତ୍ରୀକ ଏଇଠି ଓଡ଼ିଆ ପାଠ ପଢ଼େଇବା । ବସା ବେହ୍ମପୋକୁ ଚନ୍ଦନତୀର୍ଥ ବାଲିରେ ପହଡ଼େ ।

(ଚାଲିଗଲା)

ଯାତ୍ରୀ—ଆପଣଙ୍କର ନାମ ଶ୍ୟାମସୁନ୍ଦର ପଣ୍ଡିହାରୀ ?

ପଣ୍ଡା—ହଁ,

ଯାତ୍ରୀ—ଆମର ବାବାଙ୍କେ ଆପଣ ଜାଣନ୍ତେ ?

ପଣ୍ଡା—ହଁ, ଭଲ ରକମ,

ଯାତ୍ରୀ—ନାମ ଜାଣନ୍ତେ ?

ପଣ୍ଡା—ହଁ, ଗୁମାସ୍ତା ଆସୁ—

ଯାତ୍ରୀ—ଓଁ ର—ନାମ—ରମାରଞ୍ଜନ—

ପଣ୍ଡା—ହଁ—ଜାଣ—

ଯାତ୍ରୀ—ପିତାର ସ୍ୱର୍ଗବାସ ହୋଇଛେ—

ପଣ୍ଡା—ଜାଣ, ଜାଣ

( ଗୁମାସ୍ତା ନଡ଼ିଆ ଗୋଟିଏ ପାଣି ତାଳ ନେଇ ଆସିଲେ )

ଗୁମାସ୍ତା—ହେଇଟି । ଆସନ୍ତୁ ବାବୁ, କଉଡ଼ି ଆଛେ ?

ଯାତ୍ରୀ—(କଉଡ଼ି କାଢ଼ି) ଆଛେ ।

ଗୁମାସ୍ତା—ଏଇଖାନେ ବସନ୍ (ପାଣି ତାଳ ଦେଇ) ପା ଧୁଏଦାଓ

ପାଣ୍ଡା ଠାକୁରେର ।

[ପଣ୍ଡା ପ୍ରତି] ମନ୍ତ୍ର ପଢ଼ ।

ଯାତ୍ରୀ—[ ତାଳ ଧରି ପାଣି ଢାଳିଲ ପଣ୍ଡା ପାଦରେ ]

ପଣ୍ଡା—(ପଢ଼ିଲେ) ପୃଥିବୀ ଯାବ ତୀର୍ଥାନ

ତାନ ତୀର୍ଥାନି ସାଗରେ

ସାଗରେ ଯାନ ତୀର୍ଥାନି

ବିପ୍ରପାଦେ ସୁଦକ୍ଷିଣା—

ଗୁମାସ୍ତା—ତେନୋଦକ ସେବାକରେ—ଏବାର ଦକ୍ଷିଣା ଦାଓ ।

ଯାତ୍ରୀ—( କଉଡ଼ି ପଣ୍ଡାଙ୍କୁ ଦେଲେ )

ପଣ୍ଡା — ବଲନ୍ —

ଗୁରୁ ବ୍ରହ୍ମା ଗୁରୁ ବିଷ୍ଣୁ, ଗୁରୁଦେବ ମହେଶ୍ୱର;
ଗୁରୁ ସାକ୍ଷାତ୍ ପରଂବ୍ରହ୍ମ ତସ୍ମୈ ଶ୍ରୀ ଗୁରବେ ନମଃ ।

ଗୁମାସ୍ତା — [ ଡାଲନେଇ ] ଧାନ୍, ଏବାର ପଞ୍ଚତୀର୍ଥ, ନେଇଯା' ମାଙ୍ଗାପୁରୁ ! ନାଲ ଯାତ୍ରୀଙ୍କ ଏଇଥର ହରଗୁଣ ପଡ଼ୋଇ ଥ । ମୋର ତେଜେଣେ ଖେଦେ ପଶ୍ଚିମା ଯାତ୍ରୀ ଅଛନ୍ତି ଯେ — ତାଙ୍କ ଖବର ବୁଝେଁ ।

[ ଚାଲିଗଲେ ]

ପଣ୍ଡା — [ଯାତ୍ରୀ କ ନେଇ] ଚଲ୍ନ —

[ ଚାଲିଗଲେ ]।

---

# ଉପସଂହାର

## ଜୟଦେବ – ପରାଶର

ପରାଶର –( ଖଣ୍ଡିଏ ପୋଥି ଧରି ପଢୁଥିଲେ )

ଶଶ୍ୱଂ ଚଞ୍ଚଳ ଚଞ୍ଚଲେବ-ଚନ୍ଦ୍ରିକା ଚେତଶ୍ଚମତ୍କାରଣୀ
ପୀୟୂଷ ଦ୍ୟୁତି ମଣ୍ଡଳୀବ ମଧୁରା ସ୍ୱଚ୍ଛ ପ୍ରବାହ ଚ୍ଛଟା ।
ଦୂର୍ବା ଭଙ୍ଗୀବ କୁରଙ୍ଗ ଭଙ୍ଗୁର ଦୃଶାମାନନ୍ଦ ସନ୍ଦାପ୍ରିୟା
ଗୋଷ୍ଠୀ ଶ୍ରୀଜୟଦେବ ପଣ୍ଡିତ କବେଃ ସାବର୍ତ୍ତତେ ନର୍ତ୍ତିତୁମ୍ ।

ଅପୂର୍ବ ରଚନା ! ପଦ ଯୋଜନା ଏତେ ମଧୁର ଯେ ଶୁଣିଲେଇ "ପୀୟୂଷ ଲହରୀ" ନାମ ସାର୍ଥକ ମନେ ହୁଏ । କବି ! ଗୀତଗୋବିନ୍ଦ ପରି ତମର ଏ ପୀୟୂଷ ଲହରୀ ମଧ୍ୟ ଅତି ସୁନ୍ଦର ।

[ଗୋଟି କେତେ ପୃଷ୍ଠା ଲେଉଟାଇ ]

ମରୁତ୍ କମ୍ପା ଚମ୍ପା-କୁଳ-ଲହରୀ ସମ୍ପାତ ଶିଶିରଃ
ସ୍ଫୁରନ୍ମାଲ୍ଲୀ ବଲ୍ଲୀ କୁସୁମ ପୁଟ ହଲ୍ଲୀ ଶକ ନଟଃ ।
ସ୍ଫୁରନ୍ମାଲ୍ଲୀ କାଲ୍ଲୀ ମଧୁର ମଧୁପାଲ୍ଲୀ କବଳୟନ୍
ନୟନ୍ ମନ୍ଦଂ ମନ୍ଦଂ ଚରଲ ଚରୁ ବୃନ୍ଦଂ ପ୍ରସରତି ।

ଭଣା ବୋଲି କାହାକୁ କହିବାକୁ ଶକ୍ତି ନାହିଁ ଜୟଦେବ ! ସବୁଗୁଡ଼ିକ ଜଗନ୍ନାଥଙ୍କ ନୈବେଦ୍ୟ । ତୁଳସୀପତ୍ରବତ । ସାନ ବଡ଼ ବାଛିବାର ଉପାୟ ନାହିଁ ।

ଜୟ—ପରାଶର ! ତୁମେ ପୀୟୂଷ ଲହରୀ ବୋଲି କହୁଚ ନା । ମୁଁ ମନେ କରୁଚି ଏଇଟିକୁ କୃଷ୍ଣଲୀଳା ନାଟିକା ନାଆଁ ଦେଲେ କେମିତି ହୁଅନ୍ତା ?

ପରାଶର—ଉତ୍ତମ ! ଏ ତ ଏକାଙ୍କ ନାଟକ । ତମର କଳ୍ପନାନୁସାରେ ନାମ ଦିଅ, ମନ୍ଦ ନୁହେଁ ।

ପଦ୍ମା—( ଥାଳୀରେ ଫୁଲହାର ଧରି ଆସିଲେ ) ବଡ଼ ଦେଉଳକୁ ଯିବା ପରା ! ବେଳ ହେଲାଣି ଯେ ।

ପରାଶର - ହଁ, ଦେବୀ ! (ପୋଥି ବାନ୍ଧି ବସିଲେ)

ଜୟ—ପଦ୍ମା ! ଫୁଲ ମୋତେ ଦିଅ । ତୁମେ ପାଣ୍ଡୁଲିପି ରଖିଦେଇ ଆସ ତ !

ପଦ୍ମା—[ବସି, ବ୍ୟାସାସନ ଓ ପୋଥି ସଜାଡ଼ି ବସିଲେ – କମଳା, ରୋହିଣୀ ପ୍ରବେଶ, ତତ୍ ପଶ୍ଚାତ୍ ପୂଜାରୀ—ପଦ୍ମା ପୋଥି ନେଇଗଲେ ଘର ଭିତରକୁ ]

ପୂଜାରୀ—(ଜୟଦେବଙ୍କ ନିକଟକୁ ଯାଇ ଫୁଲ ଧରିବାକୁ ହାତ ବଢ଼ାଇଲେ )

ଜୟ—(ପୂଜାରୀଙ୍କୁ ଚାହିଁ ) ଓ, ହଉ ( ଫୁଲ ଥାଳୀ ବଢ଼ାଇଲେ )



# ଦ୍ୱିତୀୟ ଦୃଶ୍ୟ

## ବଡ଼ଦାଣ୍ଡ

[ ଭିକାରୀ ଗାଇ ଗାଇ ଚାଲିଛି ]

ମନ୍ଦର ଗିରିଧର ଧର ବ୍ରଜସୁନ୍ଦର ହେ
ବାସ ନୀଳକନ୍ଦର ହେ ।
ନନ୍ଦନନ୍ଦନ ଆନନ୍ଦକନ୍ଦର ହେ ।
ଡର ମର ସିନା ମୁଁ ସାଆଁନ୍ତ ବୋଲିଛି ହେ ।
ମନ କହୁନାହିଁ ସାଆନ୍ତ ମୋର
ବଡ଼ଘଣେ ବଡ଼ ପତାକା ବାନ୍ଧି ତ
ମୋ ଲାଗି କଲିଲ ସିଂହଦୁଆର ହେ ।
ନଦା ପଥର, ମଲି ଏଥର
ବୁଡ଼ିଯିବ ପ୍ରଭୁପଣ ଚାତର
(ଆଉ) ବଡ଼ ବୋଲି କେ କରିବ ଖାତର ହେ ।
ଅଳି ଅଝଟକୁ ଥରିଗଲେ ଗୁଣ୍ଡି ହେ
ପ୍ରଭୁ ବୋଲାଇବ କେଉଁ ଗୁଣରେ
ବୁଡ଼ି ରହି ନିଜେ ଛପନଭୋଗରେ
ସେବକଜନରେ କରିଲ ପର ହେ ।
ନଦା ପଥର, ମଲି ଏଥର
ଛଡ଼ାଇ ନେଉଛ ବଡ଼ା ପତର
(ଆଉ) ଫାକାସୀ ଉଡ଼ାଇ ରଖ ଏଥର ହେ ।

———

# ଜୟଦେବ—ଶେଷ ଦୃଶ୍ୟ

( ଜଗନ୍ନାଥ ମନ୍ଦିର, ଆରତି ବଢ଼ୁଥିଲା, ବାହାରେ ବାଜା ବାଜୁଥିଲା, ଜୟଦେବ, ପରାଶର, ପଦ୍ମା, ରୋହିଣୀ,ବିମଳା, ଗୀତଗୋବିନ୍ଦ ପାଠକରୁଥିଲେ । ପରାଶର ହାତରେ ଗୀତଗୋବିନ୍ଦ ପୋଥି—ଉନ୍ମୁକ୍ତ ମନ୍ଦିରଦ୍ୱାରରୁ ଦେବମୂର୍ତ୍ତି ପରିଦୃଶ୍ୟମାନ )

ଶ୍ରିତକମଳା କୁଚମଣ୍ଡଳ ଧୃତ କୁଣ୍ଡଳ,
କଳିତ ଲଳିତ ବନମାଳ, ଜୟ ଜୟ ଦେବ ହରେ ।
ଦିନମଣି ମଣ୍ଡଳ ମଣ୍ଡନ ଭବଖଣ୍ଡନଂ
ମୁନି ଜନମାନସ ହଂସ, ଜୟ ଜୟ ଦେବ ହରେ ।
କାଳୀୟ ବିଷଧର ଗଞ୍ଜନ ଜନ ରଞ୍ଜନ ହେ
ଯଦୁକୁଳ ନଳିନ ଦିନେଶ, ଜୟ ଜୟ ଦେବ ହରେ ।
ମଧୁ ମୁର ନରକ ବିନାଶନ ଗରୁଡ଼ାଶନ
ସୁରକୁଳ କେଳିନିଦାନଂ ଜୟ ଜୟ ଦେବ ହରେ ।

( ସହସା କାହାଳୀ ବାଜି ଉଠିଲା, ମନ୍ଦିରରେ ପ୍ରବେଶ କଲେ ପୁରୀର ମହାରାଜା, ଆଗରେ ବେତ୍ର ହସ୍ତରେ ଗୁମ୍ଫ ଖୁଣ୍ଟିଆ, ପଛରେ ଦେଉଳ କରଣ । ଦେଉଳ କରଣଙ୍କ ହସ୍ତରେ ଅଭିନବ ଗୀତଗୋବିନ୍ଦ ପୋଥି, ରାଜା ଆସି ତନ୍ମୟ ମୁଗ୍ଧ ନୟନ ଜୟଦେବଙ୍କ ଆଗେ ଠିଆ ହୋଇଗଲେ, ଦେଉଳ କରଣ ଠାରି ଦେଖାଇ ଚିହ୍ନାଇ ଦେଲେ ସେ ଜୟଦେବ, ରାଜା ନୀରବରେ ସ୍ତବ୍ଧ ରହିଲେ, ଆରତି ଶେଷରେ ଜୟଦେବ ଇତ୍ୟାଦି ପ୍ରଣାମ କରି ଉଠି ଓ ମନ୍ଦିରରୁ ଯିବାକୁ ବାହାରିଲେ । )

ରାଜା—(ଦେବକୁ ପ୍ରଣାମାନ୍ତେ) ତୁମେ, ତୁମେ ଜୟଦେବ ?
ଜୟ—ହଁ, ମୋ ନାମ ଜୟଦେବ ।
ରାଜା—ରାଜାଦେଶ ଶୁଣି ନାହଁ ?
ଜୟ—କି ଆଦେଶ ?
ରାଜା—କେହି ଜୟଦେବ କୃତ ଗୀତଗୋବିନ୍ଦ ମୋ ରାଜ୍ୟରେ ପାଠ କରି ପାରିବେ ନାହିଁ ।
ଜୟ—କିନ୍ତୁ, କ୍ଷମା ଦେବେ ମହାରାଜ ! ଜଗବନ୍ଧୁଙ୍କର ତୃପ୍ତି ତାଙ୍କର ଗୁଣଗାନରେ; ତେଣୁ ତାଙ୍କର ସେବା ଲାଗି—
ରାଜା—ମୋର ଅଭିନବ ଗୀତଗୋବିନ୍ଦ ପଢ଼ିବାକୁ ହେବ । ନଚେତ୍—
ଜୟ—ଜଗନ୍ନାଥ ଆଦେଶ ଭିନ୍ନ ଅନ୍ୟାଦେଶରେ ମୁଁ ଗୀତଗୋବିନ୍ଦ ପାଠ ବନ୍ଦ କରିବା ଅସମ୍ଭବ ମହାରାଜ !
ରାଜା—ଉତ୍ତମ ! କପଟି ପ୍ରମାଣ ଗୃହଁ ?
ଜୟ—ପ୍ରମାଣ ଜଗବନ୍ଧୁଙ୍କର ଆଦେଶ—
ରାଜା—ପୂଜାପଣ୍ଡା ! ଦୁଇଖଣ୍ଡି ପୋଥି ଶ୍ରୀଚରଣରେ ରଖି ଦ୍ୱାର ବନ୍ଦକର । ପ୍ରଭୁ ନିଜେ ଯାହା ବାଛି ଦେବେ, ଆଜିଠାରୁ ତାହାହିଁ ଶ୍ରୀମନ୍ଦିରରେ ପାଠ କରାଯିବ ।

ପୂଃପଣ୍ଡା—( ପୋଥି ଦୁଇଖଣ୍ଡି ଦେଇ ) ମଣିମା ! ( ଆଦେଶ ପାଳନ କଲେ )

ରାଜା—କିନ୍ତୁ ଜୟଦେବ ! ପ୍ରଭୁ ତୁମର ରଚନା ଗ୍ରହଣ ନ କଲେ ମୋ ରାଜ୍ୟରେ ତୁମ ବାସ ଅସମ୍ଭବ ! ଆଉ ଆଜିଠାରୁ ଯେ ତୁମର ଗୀତଗୋବିନ୍ଦ କୌଣସି ସ୍ଥାନରେ ଗାଇବ ତାର କଠିନ ଶାସ୍ତି, ଜାଣ ? ତୁମର ଏହି

ଗୀତଗୋବିନ୍ଦ ପାଠରେ ପ୍ରଭୁ ଅସନ୍ତୁଷ୍ଟ ହୋଇ ମନ୍ଦିର ଛାଡ଼ି ଯାଆନ୍ତି ।

ଜୟ—ପ୍ରଭୁ ? ଅସନ୍ତୁଷ୍ଟ ! ଗୀତଗୋବିନ୍ଦରେ ? ସ୍ୱହସ୍ତରେ ଯିଏ ଯାହା ସେ ପୂରଣ କରିଥିଲେ

ରାଜା—ହଁ, ହଁ, ଅସନ୍ତୁଷ୍ଟ । ତେଣୁ ଭୋଗରେ ବିଳମ୍ବ ଘଟୁଛି, ପ୍ରଭୁ ଚକ୍ଷୁରେ ଦର୍ଶନ ଦେଉ ନାହାନ୍ତି, ତୁମର ଏ ଅପରାଧ ଅମାର୍ଜନୀୟ ।

ଜୟ—(ଅଶ୍ରୁନୟନରେ କରଯୋଡ଼ି) ଜଗବନ୍ଧୁ ! ଏ କି କଥା ଶୁଣାଇଲ ପ୍ରଭୁ !

ରାଜା—[ପୂଜାପଣ୍ଡାଙ୍କୁ] ଦ୍ୱାର ଖୋଲ । ସମସ୍ତେ ଦେଖନ୍ତୁ ପ୍ରଭୁ କେଉଁ ପୋଥି ଗ୍ରହଣ କଲେ ।

ପୂଃପ—( ଦ୍ୱାର ଫିଟାଇ ଦେଲେ, ଜୟ ଜଗବନ୍ଧୁ ଶବ୍ଦ ଭିତରେ ଉପର ତଳ ହୋଇ ଦୁଇ ଖଣ୍ଡ ପୋଥି ଦେଖି ରାଜା ଚିହ୍ନି ପାରିଲେ । ପୂଜାପଣ୍ଡା ପୋଥି ପାଖେ ଠିଆ ହେଲେ)

ରାଜା—ସେହିପରି ନେଇ ଆସ । (ପୂଜାପଣ୍ଡା ପୋଥି ନେଇ ଆସି ରାଜାଙ୍କ ସମ୍ମୁଖରେ ଦେଖାଇଲେ ।)

ଧନ୍ୟ ଭକ୍ତ ଜୟଦେବ !

ଉତ୍କଳଗୌରବ ତୁମ୍ଭେ, ଉତ୍କଳର ଗର୍ବ !

ସ୍ୱପ୍ନେ ମୁଁ ଆଦେଶ ପାଇ ମଣୁଥିଲି ମିଥ୍ୟା ।

ଏବେ ସ୍ୱଚକ୍ଷୁରେ, ସର୍ବ ସମକ୍ଷରେ,

କହିଦେଲେ ପ୍ରଭୁ—

ଶ୍ରେଷ୍ଠ ଏକା ଶ୍ରୀଗୀତଗୋବିନ୍ଦ

ଶୁଣ ଭକ୍ତ ! ଯେ ଆଦେଶ ପାଇଛି ମୁଁ ସ୍ୱପ୍ନେ,

ଦ୍ୱାଦଶ ସର୍ଗ—ସମ୍ପୂର୍ଣ୍ଣ ଗୀତଗୋବିନ୍ଦରେ ତବ,

ଦ୍ୱାଦଶଟି ଶ୍ଳୋକ ମୋର ପାଇବ ହେ ସ୍ଥାନ ।
କଣ୍ଠେ କଣ୍ଠେ ଗୀତ ହେବ ତାହା ।

ଜୟଦେବ— ସାଧୁ ସାଧୁ ମହାରାଜ !

ସମସ୍ତେ—ଜୟ ଜଗନ୍ନାଥ !

ରାଜା — ପଣ୍ଡାପଣ୍ଡାଏ !

ଜଗନ୍ନାଥଙ୍କର ଶ୍ରୀଚରଣ ଛୁଆଇଁ ଶିରୋପା ଆଣ ।
ମେକାପଙ୍କୁ କହ, ଧଡ଼ିଆଁଙ୍କ ଗନ୍ଧାଘରୁ ସୁନା ବେଣ୍ଟ ତଡ଼ିଆଁ
ଅଣନ୍ତୁ, ଶୀଘ୍ର ।

ପୂ—ମହାରଜା !　　(ଚାଲିଗଲେ)

ରାଜା—ଜୟଦେବ କୃତ ଗ୍ରନ୍ଥ
ସମାପ୍ତ ହୋଇବ
ଏହି ରଚନାରେ ମୋର ।
"ତନ୍ତଥଂ କେଳିତଞ୍ଚିର୍ବିହୃତ୍ୟ ଯମୁନାକୂଳେ ସମଂ ରାଧୟା
ତଦ୍ରୋମାବଳି ମୌକ୍ତିକାବଳି ଯୁଗେ ବେଣୀଭ୍ରମଂ ବିଭ୍ରତ
ତତ୍ରାହ୍ଲାଦି କୁଚ ପ୍ରୟୋଗ ଫଳୟୋ ଲିପ୍ସାବତୋହସ୍ତୟୋ—
ର୍ବ୍ୟାପାରାଃ ପୁରୁଷୋତ୍ତମସ୍ୟ ଦଦତୁଂ ସ୍ଫୀତାଂ ମୁଦାଂ ସଂପଦମ୍ ।
ଭକ୍ତବର !　　[ ପୋଥି ଜୟଦେବଙ୍କୁ ବଢ଼ାଇ]
ଶ୍ରୀ କରରେ ତବ
ଯୋଗ କର ଶ୍ଳୋକ ମମ, ପାଣ୍ଡୁଲିପି ମଧ୍ୟେ
ଧନ୍ୟ କର ରଚନା ମୋହର ।
ଅନୁଗ୍ରହେ ତବ—
କୁସୁମର ସଙ୍ଗ ଲଭି; ପଙ୍କ ଯଥା ହସ୍ତରଇ କବ !

ସେହିମତ —
ଦେବତା ନୈବେଦ୍ୟ—
ଏହି ତବ ଗୀତଗୋବିନ୍ଦର ସୁପବିତ୍ର ସଙ୍ଗ ଲଭି
ସଫଳ ହେଉ କାମନା, ସାଧନା ମୋହର ।

ପରି—ଧନ୍ୟ ମହାରାଜ !
ଧନ୍ୟ ତବ ଭକ୍ତି !
(ପୂଜାପଣ୍ଡା ଶିରୋପା ଇତ୍ୟାଦି ଆଣିଲେ)

ରାଜା—[ଶାଢ଼ୀ ଧରି]
କବି ଜୟଦେବ !
ଆଜି ଏକ ଅନୁରୋଧ ମୋର
ଆଜଠାରୁ ଉତ୍କଳର ରାଜସଙ୍ଘ
ହେଉ ସମ୍ମାନିତ
ସଭାକବି ରୂପେ ବରି ତୁମ୍ଭଙ୍କୁ ହେ କବି !
ସ୍ୱହସ୍ତରେ ଶିରେ ତବ ବାନ୍ଧି ଏ ଶିରୋପା
ଗୌରବ ମଣୁଛି ଆଜ ଉତ୍କଳ ନରେଶ ।
ରଥେ, ରୂପେ, ଶ୍ରୀମନ୍ଦିରେ
ଆଜଠାରୁ ଏ ରୂମର ବଆଗଲା ଶିରେ ।
ଆଜି ଶୁଣ ସର୍ବେ,— ଉପସ୍ଥିତ ଯେତେ
ମାଦଳାପାଞ୍ଜିରେ ମଧ୍ୟ ଲେଖା ରହୁ ଏହା ।
ଶ୍ରୀମନ୍ଦିରେ ଆଜ, ଏହି ମୁହୂର୍ତ୍ତରୁ
ଶ୍ରୀଗୀତଗୋବିନ୍ଦ ନିତ୍ୟ ଶିଳେଇ ବଢ଼ିବ ।
ଯାବତ ଚନ୍ଦ୍ରାର୍କେ
ଏ ମାନର ନୋହିବ ଖଣ୍ଡର ।
ଗାଅ ଭକ୍ତ ! ଗାଅ କବିରାଜ ଜୟଦେବ !

ଗାଅ ପ୍ରେମ ସଖି ପଦ୍ମାବତି !
ଗାଅ ପରାଶର ଆଦି ଯେତେ ଭକ୍ତ
ଉପସ୍ଥିତ ଶ୍ରୀମନ୍ଦିରେ ଆଜ ।
ଗାଅ ସର୍ବେ ଶ୍ରୀଗୀତଗୋବିନ୍ଦ ।

ସମସ୍ତେ — ସାଧୁ ! ସାଧୁ ! ମହାରାଜ ! ଜୟ ଜଗନ୍ନାଥ !

— ଗୀତ —

ଲଳିତ ଲବଙ୍ଗଲତା ପରିଶୀଳନ କୋମଳ ମଳୟ ସମୀରେ
ମଧୁକରନିକରକରମ୍ବିତ କୋକିଳ କୂଜିତ କୁଞ୍ଜକୁଟୀରେ ।
ବିହରତି ହରିରିହ ସରସ ବସନ୍ତେ,
ନୃତ୍ୟତି ଯୁବତିଜନେନ ସମଂ ସଖି, ବିରହିଜନସ୍ୟ ଦୁରନ୍ତେ ।
। ଧ୍ରୁବ ।

ଉନ୍ମଦମଦନମନୋରଥ ପଥିକବଧୂଜନ ଜନିତ ବିଳାପେ,
ଅଳିକୁଳସଂକୁଳ କୁସୁମସମୂହ ନିରାକୁଳ ବକୁଳ କଳାପେ ।
ଶ୍ରୀଜୟଦେବ ଭଣିତମିଦମୁଦୟତି ହରିଚରଣସ୍ମୃତି ସାରଂ
ସରସ ବସନ୍ତ ସମୟ ବନ ବର୍ଣ୍ଣନ ମନୁଗତ ମଦନବିକାରମ୍‌
( ଜଗନ୍ନାଥ ମୂର୍ତ୍ତି ପରିବର୍ତ୍ତେ ଶ୍ରୀକୃଷ୍ଣ ଆବିର୍ଭାବ )

ଶ୍ରୀ ଶୁଭମସ୍ତୁ



